ପ୍ରକାଶକ—
ପ୍ରବାସୀ ପ୍ରକାଶନୀ
ଉପନ୍ୟାସ ମହଲ
ରାଣୀହାଟ
କଟକ—୧.

ମୁଦ୍ରାକର—
ଲକ୍ଷ୍ମୀଧର ନାୟକ
ମହାଲକ୍ଷ୍ମୀ ପ୍ରେସ,
କଟକ ୧

ପ୍ରଥମ ମୁଦ୍ରଣ
୧୯୫୧

ଏକଟଙ୍କା

# କୃତଜ୍ଞତା

"କଥା ଓ ଗାଥା"ର ସମ୍ପାଦନାରେ ଯେଉଁ ସହୃଦୟ କବିମାନେ ନିଜ ନିଜ କବିତାର ପ୍ରକାଶ ପାଇଁ ଅନୁମତି ପ୍ରଦାନ କରିଛନ୍ତି ମୁଁ ସେମାନଙ୍କୁ ମୋର ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି ।

ସମ୍ପାଦକ

# ସୂଚୀ

# ପଦ୍ମାବତୀ-ପରିଣୟ

ନନ୍ଦକିଶୋର ବଳ

୧

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା,
ସମର-ସଜ୍ଜା ଲାଗିଛି ଉତ୍କଳେ
ବାଜୁଛି ଯୁଦ୍ଧ-ବାଜଣା ।

ନଗର ନଗର ବୁଲନ୍ତି ଢଗର
କରଇ ସମର ଘୋଷଣା,
ଦୁର୍ଗେ ଦୁର୍ଗେ ଅର୍ପଇ ଦୂତ
ସାମନ୍ତ ଗଣଙ୍କୁ ଅର୍ଚ୍ଚନା

ପଲ୍ଲୀ ପଲ୍ଲୀ ବୁଲଣ ପ୍ରଧାନ
ହକାରେ ପାଇକ-ବାହିନୀ
ଢମ୍ ଢମ୍ ବାଜେ ଘୋଷଣା-ଡିଣ୍ଡିମ
ରକ୍ତେ ନଚାଇ ଧମନୀ ।

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଅଛି ଅବମାନନା
ସମର-ସଜ୍ଜା ଲଗିଛି ଉତ୍କଳେ
ବାଜୁଛି ସଂଗ୍ରାମ-ବାଜଣା ।

୨

ଖଣ୍ଡା ସେନାଣ ଖଣ୍ଡାୟତ ଗଣ
ଉନ୍ମତ୍ତ ବୀର ଗୌରବେ;
ଚଣ୍ଡୀ ପୂଜଣ ବୀର-ବାମାଗଣ
ହୁଳ ହୁଳି ଦେଲେ ସରବେ ।

ଅସ୍ତ୍ର ଝଣ ଝଣ ହସ୍ତି-ବୃଂହଣ
ଅଶ୍ୱର ହ୍ରେଷା ଚହଳ,
ଢାଲ ଚକ୍ଷୁଅଳ ନରମୁଣ୍ଡ ମାଳ
ଝଟି ଉଡେ ଧୂଳି ପଟଳ ।

ଛନ୍ଦ ତରସ ଝଟି ଧ୍ୱଜାବଳୀ
ଫର୍ଫର ଉଡ଼େ ପବନେ,
"ଜୟ ଜଗନ୍ନାଥ" ଗୁରୁ ଗର୍ଜନ
ତ୍ରାସଇ ଦିଗ୍‌ଦିଗନ୍ତେ

କାଞ୍ଚି-ନୃପତ ଉତ୍କଳ-ନୃପେ
କରଅଛ୍ଛି ଅବମାନନା
କରୁଛ୍ଛି ବାହନୀ ଯୁଦ୍ଧଯାତ୍ରା
ବାଜୁଛ୍ଛି ସଂଗ୍ରାମ-ବାଜଣା ।

୩

କାଞ୍ଚି-ନୃପତ ଉତ୍କଳ-ନୃପେ
କରଅଛ୍ଛି ଅବମାନନା,
କରୁଛ୍ଛି ବାହନୀ ଯୁଦ୍ଧଯାତ୍ରା
ଶୁଭୁଛ୍ଛି ସଂଗ୍ରାମ-ବାଜଣା ।

ସଂଉଜ ଭୁଣ୍ଡ କମ୍ପେ ବ୍ରହ୍ମାଣ୍ଡ
ମହାଦର୍ପେ ଯାନ୍ତି ବାହାର,
ଚତୁରଙ୍ଗ ସେନା ସହ ଉତ୍କଳେଶ
"ଜୟ ଜଗନ୍ନାଥ" ଉଚ୍ଚାର ।

ଭକ୍ତ-ବତ୍ସଳ ପ୍ରଭୁ ଜଗନ୍ନାଥ
ଲୁଚି ଲୁଚି ସଙ୍ଗେ ଚଳିଲେ,
ପ୍ରଥମେ ହାରିଲେ ପୁରୁଷୋତ୍ତମ
ଭକ୍ତଙ୍କୁ ପ୍ରଭୁ ଛଳିଲେ ।

କାଞ୍ଚି-ନୃପତ ଉତ୍କଳ-ନୃପେ
କରଥିଲ ଅବମାନନା
ସମରେ ହରଇ ଲଜ୍ଜା ସେ ଦେଲ
ନୀରବ ସମର-ବାଜଣା ।

"ହେ ପୁରୁଷୋତ୍ତମ ସାହା ତୁମ ମମ
କାତରେ କରେ ମୁଁ ମିନତି,
ମାରେଁ ଅବା ମରେଁ ନାହିଁ ଅନ୍ୟ ସାହା
ମୁଁ ପୁରୁଷୋତ୍ତମ ନୃପତି।"

ଇଷ୍ଟ ପ୍ରସାଦ ଫିଙ୍ଗି ବକ୍ଷାଦେ
ହୁଁକାର ଛିହ୍ନି ଗର୍ଜନେ,
କାଞ୍ଚି-ଫଉଜେ ଉତ୍କଳ-ଥାଟ
ପେଷିଲେ ଶମନ-ସଦନେ ।

କାଞ୍ଚି-ହରଣୀ ହରଣୀ-ନୟନା
ପଦ୍ମାବତୀ ରାଜକୁମାରୀ,
ବନ୍ଦୀ କର ଓଡ୍ର-କେଶରୀ
କହନ୍ତି ମନ୍ତ୍ରୀଙ୍କୁ ହକାର,

"ଚଣ୍ଡାଳ କରେ ରଣ୍ଡୀ ଅରପ
ମେଣ୍ଟ ମୋ ଅବମାନନା
ଯୋଗ୍ୟ ଯୋଗ୍ୟା ଯୋଜନା କରଣ
ବୁଝେ ଯାଉ ସୁଣ୍ଢ-ଯାତନା ।"

"ଚଯ ଆଜ୍ଞା ଶ୍ରୀଗ୍ମନ୍" ବୋଲିଲେ ମନ୍ତ୍ରୀ
ଚନ୍ଦ୍ରା-ଭ୍ରୂକୁଟି ଲୋଚନେ
ସମ୍ଭ୍ରମଭରେ ସ୍ବର୍ଣ୍ଣ-ସ୍କନ୍ଧାବାରେ
ରଖିଲେ ଦେବୀଙ୍କୁ ନିର୍ଜନେ ।

୫

କାଞ୍ଚି-ନୃପତି ଉତ୍କଳ-ନୃପେ
କରିଥିଲା ଅପମାନନା
ଯୁଦ୍ଧ-ବିଜୟୀ ଉତ୍କଳ-ସାଇଁ,
ପୂରିଅଛି ମନସ୍କାମନା ।

ସ୍ବର୍ଣ୍ଣ ମାର୍ଜ୍ଜନୀ ହସ୍ତେ ନୃପତି
କରୁଥିଲେ ଛେରା ପହଁରା,
ପଦ୍ମାବତୀଙ୍କୁ ମନ୍ତ୍ରୀ-ଆଦେଶେ
ଆଣି ଦେଖା କଲା ଡଗର ।

ମନ୍ତ୍ରୀ କହନ୍ତି, ଗଜପତି ଅଜ୍ଞ
ଟଳନାହିଁ କେବେ ଭୁବନେ
ହସ୍ତୀର ଦନ୍ତ ଗଳଟି ହସ୍ତୀ—
ମୁଖେ ପଶି ନାହିଁ ଯେସନେ ।

ନୃପତି-ନିଦେଶେ          ଚଣ୍ଡାଳ-ବେଶୀ
ନୃପେ କଲ୍ କ୍ଷେମା ଅର୍ପଣ,
"ଜୟ ଜଗନ୍ନାଥ"          "ଧନ୍ୟ ହେ ମନ୍ତ୍ରୀ"
ବନ୍ଦ୍ୟାନ୍ତେ ଶୁଭେ ବଚନ ।

ଚଣ୍ଡାଳ କରେ          ଚଣ୍ଡୀ ଅର୍ପିତା
ମେଣ୍ଟିଲ ଅବମାନନା,
ଯୋଗ୍ୟ ଯୋଗ୍ୟା          ହେଲେ ସଂଯୁକ୍ତା
ଦୂରେ ଗଲା ଯୁଦ୍ଧ-ଯାତନା ।

# କାଳିଜାଇ

ଗୋଦାବରୀଶ ମିଶ୍ର

ଭଲ କରି ନାଅ ବାହାରେ ନାଉରି,
ଝିଅକୁ ମାଡ଼ୁଛି ଡର,
ଘଡ଼େ ଗଡ଼ ଲୋକ ଗୃହେଁ ବସିଥିବେ
ଝିଅ ଯିବ ଶାଶୁଘର ।

ଭଲ କରି ନାଅ ବୋହୁଛୁ ନାଉରି
ଡରେଇ କରୁଛି ଝିଅ
ମାମୁଁ ଭଣଜାର କୁଣ୍ଠରୁ ଅସେ ଲୋ
ବୋହୂ ସୁଲୁ ସୁଲୁ ବାଆ ।

ଧନ ଦଣ୍ଡଘଡ଼ି		ହେଲାଣିଟି ଅସ୍ତ
ଖରା ମାରେ ଗୁଇଁ ଗୁଇଁ,
ପାଞ୍ଚ କୋଶ ବାଟ		ଯିବାକୁ ଅଛି ଲୋ
ବେଳ ତ ପାଇବ ନାହିଁ ।”

ନାଉରୀ ବାପୁଡ଼ା		କାତ ମାରୁଅଛି
ଉଦାସେ ଗାଉଛି ଗୀତ,
ନାଅ ଉଡ଼ିଯାଏ		ପବନ ପ୍ରାଏ ଲୋ
ଜଣା ନ ପଡ଼ଇ ବାଟ ।

ମାଅ ଭଉଣୀଙ୍କି		ସାଥି ସଂଗାତଙ୍କୁ
ଗାଁଅ ଯେ ଅଛନ୍ତି ଘର
ନାଅ ରେ ବସି ସେ		ତାଙ୍କର କଥା ଲୋ
ହୁଏ ନିରନ୍ତରେ ବାଟେ ।

ମାଅ ଭଉଣିଏ		ସାଥି 'ସଂଗାତେ ସେ
ବହୁଲେ ଦୂରସ୍ଥେ କାହିଁ ?
ଘରକେ ନୋହୁଛି		ଅଉ କି ସତେ ଲୋ
ଧନେ ସେ ଦେଖିବ ଯାଇ ।

ନାଅ ଚଳୁ ଅଛି		ପବନ ସମାନେ
ମୁହୂର୍ତ୍ତେ ନ ହୁଏ ଥୟ,
ଚଲ୍ଲା ଯେତେକ ତାର		ବଣ ପାହାଡ଼ ଲୋ
ଦେଖନ୍ତା ଠିକଏ ଗାଁଅ ।

ଘଣ୍ଟଶିଳା ଶିଖେ        ଗୁହିଁ ସେ କହନ୍ତା
ଦିଅ ରେ ମେଲାଣି ମତେ,
ଭେଟ ଅଛି ଦିନେ        ନୋହିବ ଜୀବନେ
ଯାଉଛି ଘୋର ବନସ୍ଥେ ।

ଶାଳିଆ ନଈ ତା        ନିତିଦିନ ସାଥି
ସୁଟେଗି ବୁଲୁଥାଏ କୂଳେ
ବେଳେ ସୁଏ ତାର        ସ୍ନାହାନ ସାରି ଲୋ
ଝୁପି ଲେଉଟଇ ଘରେ ।

କାଳି ଅଗାରୁ ସେ        ଗୁଳି ଯେ ଅଇଲା
ଦେଖି ତ ନାହିଁଛି ତାକୁ,
ଘର ଗ୍ୟାତ ନଈ        ନାଆଁଟି ତାର ଲୋ
ଊନକୋଡ଼ି କୋଶେ ତାକୁ ।

ମାଆ ଭଗବତୀ        ପୀଠ କୋଳେ ତାର
"ଜଗତ ତାରଣୀ" ନାଆଁ,
ଡାକ କହୁଥାନ୍ତି        ନୋହିଲା ଅଛ ଲୋ
ସାହା ମୋ ଥିବୁଟି ମାଆ ।"

ନାଆ ଅପି ହେଲା        ଦଣ୍ଡକ ଭିତରେ
ଚଢ଼ିଇ ଦୁଗାର ତଳେ ,
ଘଣ୍ଟଶିଳା ଅଛି        ନ ଦିଶେ, ଲୁଚି ଗଲେ
ରହିଲା ଶାଳିଆ ଦୂରେ ।

ଗୃହୁଁ ଗୃହୁଁ ଆସି ପଦ୍ମଫୁଲା ନାଆ
ଧଡ଼ି ଚଳଙ୍ଗାରେ ପୁଣି,
ହିଅର ଆଖିରୁ ଝରଇ ଲୁହ ଲୋ
ଛନ୍ତ ପିନ୍ଧା ଛୁଟ କାନି ।

ପାରିକୁଦ ବୋଲି ଖାଇଜ ପୁଣି ସେ
ଚଳିକା ମଝିରେ କାହିଁ,
କେମନ୍ତ ମୂର୍ଚ୍ଛିଲ ଝିଅକୁ ବାପା ହେ
ଏତେ ଦୂରରେ ଦେବା ପାଇଁ ।

ବର ବୋଲି ଯାର ଧରାଇଲ ହାତ
କି ତାର ଦେଖିଲ ଶିରୀ ?
ରୂପ ବିଦ୍ୟା ଅଛି ବିଭବ ବାପା ହେ
ଛନ୍ଦିଏ ଛନ୍ଦିଙ୍କୁ ବଳି ।

ମହୀ ମଣ୍ଡଳରେ ନାହିଁତ ନ ଥିବ
ମୋ ଭଳି ନିଠୁରଶ ଜନ,
ଏ ମହା ସମୁଦ୍ର ମଝିରେ ବାପା ହେ
କେମନ୍ତେ ବଂଚିବି ଧନ ?

ଏତେ ସ୍ୱପ୍ନମାନ   କଢ଼ିବାକୁ ଯେତେବେ
ମନରେ ଥିଲା ବଡୁର
ଏନୁଡିଶାଳେଟି   କପାଇଁ ବାପା ହେ
ଉଣ୍ଟି ଶପି ନ ମାରିଲେ ?

ଝିଅକୁ ନଣ୍ଡି ନେତ୍ର   ଦେଇଛ ପଠାଇ
ବନସ୍ଥକୁ ଜାଣୁ ଜାଣୁ
କପାଳ ଅଦର   ଯାଉଛି ବୋଇ ଲୋ
ପାଶୋରି ନ ଦେବୁ ମନୁ । ”

ନାଆ ଉଡ଼ିଯାଏ   ପବନ ସମାନେ
ନାହିଁ ଷଣେ ହୁଏ ଥୟ
ଝିଅ ବସିଅଛି   ଭୁନଟି ହୋଇ ଲୋ
ନେଇଁ ବହିଯାଏ ଲୁହ ।

ନାଆ ଚୁଲିଅଛି   ପବନ ସମାନେ
ନ ମାନେ ପାଣି ପଥର
ଭୁଲି ହୁଅ ଜାଇ,   ନ କାନ୍ଦ ଅଉ ଲୋ
ଏଇ ଯେ ଦଣ୍ଡୁଛି ଗଡ଼ ।

ଏତେ ବୋଲି ବାପା   ଝିଅର ଅଖିରୁ
ଦେଲେ ଲୁହଧାର ପୋଛି
ତେତେ ପରେ ତାକୁ   ଚୁମ୍ବାନ୍ତି ବସି ଲୋ
ଜାଇ ଚୁମ୍ବୁ ନାହିଁ କାନ୍ଥି ।

ଭଲ କର ନାଅ ବାହା ରେ ନାଉରି
ଝିଅକୁ ମାଡୁଛି ଡର
ନୂଆ ବର ଯାଇ ନାଅରେ ବସୁଛି
ଯିବ ବୋଲି ଶାଶୁଘର ।

ଭଲ କର ନାଅ ବୋହୁଛି ନାଉରୀ
ଭଡ଼ ମାରୁଅଛି କାଠ
ସୁଲୁ ସୁଲୁ ବାଆ ବୋହୁ ଅଛି ଲୋ
ଜଣା ନ ପଡ଼ଇ ବାଟ ।

ନାଅ ଭିଡ଼ି ଆସି ଦଣ୍ଡକ ଭିତରେ
ଗଣ୍ଡିରେ ପଡ଼ିଲା ଯାଇ
ଥିର ହୋଇ ଗଲା ନାଉରୀ ଠିଆ ଲୋ
କାଠ ଆଉ ପାଉ ନାହିଁ,

ଶୈଳେଶ ଶିଖରୁ ଚଲା ମେଘ ଖଣ୍ଡେ
ଉଠେଇ ଆସିଲା କାହିଁ ।
ଲୁଚିଗଲେ ତହିଁ ସୂର୍ଯ୍ୟ ଦେବତା ଲୋ
ଖବର ନ ପଡ଼ଇ ଆଉ ।

ମାଝି ଅସୁଅଛି ଧାଡ଼ଧାରେ ମେଘ
ଛାଟିଅ ନାସିକ ଧରି
ବରଷା ବତାସି ଗରଜୁ ଅଛି ଲୋ
ଦିନ ଦଣ୍ଡେ ରାତି ପରି ।

ନାଅ ପଡ଼ ଅଛି ମଝି ଗଙ୍ଗେ ଅଟି
ବୁଡ଼ ଯିବ ହାତୀ ଛତ,
ଟଳମଳ ହୋଇ ଟଳୁଛି ନାଅ ଲୋ
ନାଉରୀର ବଡ଼ ଭୀତ ।

ଭଲ କର ବେଗେ ବୁହା ରେ ନାଉରୀ
ନାଅ ହେଲା ଟଳମଳ
ବରଷା ବତାସି ଗରଜ ଅସୁଛି
ଝିଅକୁ ମାଉଛି ଡରା ”

ବରଷା ବତାସି ଗରଜ ଅଛିଲା!
ନାଅ ନୁହେଁ ଥୟ କର
ଏକା ପବନକେ ପାହାଡେ ଯାଇ ଲେ
ପିଟି ହୋଇଗଲା ଚୁର ।

ମେଘ ଗୁଲ୍‌ଗଲା ମେଘର ବାଟେ ସେ
ବତାସି ହୋଇଲା ଥିର,
ପଡ଼ଗଲା ଖରା ନିର୍ମଳ ହୋଇ ଲୋ
ପାଣି ହୁଏ କଲ କଲ ।

ବାପା ପଗ୍ରରନ୍ତି ଖୋଜି ନାଉରୀ ରେ
"ଝିଅ ମୋର ଗଲା କାହିଁ?
ବୁଢ଼ ଅଖି ଠିଆ ନାଉରୀ ନିକେ ଲୋ
ଭୁଣ୍ଡ ତା ଫିଟଇ ନାହିଁ ।

ଚିଲ୍‌କା ପାଣିରେ ଦୋଳୁଛି ଲହରୀ
ବୋହୁଛି ଶୀତଳ ବାଆ
ସୋର୍ ସୋର୍ ଖରା ଚଳି ଯାଉଛି ଲୋ
ଖେଳୁଛି ସହସ୍ର ନାଆ ।

ପାହାଡ଼ ଚଢ଼େଇ ଜହ୍ନ ଅଛି ସବ
ମନେ କି ଅଛି ତା ଧୋକା ?
ପାଣିତଳେ ଛାଇ ବୁଲ୍ ଯାଉଛି ଲୋ,
ଜାଇଛି ନାହିଁଛି ଏକା ।

ବାପା ଫେରି ଆସି ବୋଉଙ୍କ ଆଗରେ
କିଛି ନ ପାରନ୍ତି କହୁ,
ଅର ଦନ ପୁଣି ନାଉରୀ ଗଲା ଲୋ
ନାହା ସେଇ ବାଟେ ବାହୁ ।

ଚେଉଣେ' ବରଷ ହେଲାଣି ସେଦନୁ
ଗଣି କି କହିବ କିଏ ?
ନାହିଁ କିଛି ଅଉ ସେକାଳ କଥା ଲୋ
ଜାଇ ରହିଅଛି ଜିଏ ।

ବାଲିଗାଆଁ କୂଳ ନାଆ ଗଲା ବେଳେ
ପାରିକୁଦ ଗଣ୍ଡଠାକୁ,
ପାହାଡ଼ର ପାଖେ ମଣିଷ ତୁଣ୍ଡ ଲୋ
ନ ଶୁଣାଯାଏ କାହାକୁ ?

ବରଷା ବଢାସି ଟେକିକାରେ ଅଛ
ହୁଏ ନାହିଁ ତେଡେ ଭଲ,
ଆପଦେ ବିପଦେ ଜଣା ପଡ଼ଇ ଲୋ
ସାହା କିଏ ଥିଲା ପର ।

ନାଉରୀ କେଉଟ ପାହାଡ଼ ବାଟେ ସେ
ନାଆ ନେଇ ଗଲାବେଳେ,
କାମେ ଆପଣାର ଶୁଭ ମନାସି ଲୋ
ଜୁହାର କରଇ ଥରେ ।

ଡୋଳିଲେ ପାହାଡ ଶିଖେ କାଲେ ଲୋକେ
ସୁନ୍ଦର ଦେଉଳଟିଏ
ସେ ଦେଉଳେ ଅବା ରହିବ ଯାଇ ଲୋ
ଶିଳକା ମନ୍ଦିରେ କିଏ ?

ସୂର୍ଯ୍ୟ ବୁଡି ଗଲେ, କିଣବଦ ପେଟେବ
ହୁଏ ସବୁ ସଂଜ ବେଳେ,
ଦୀପ ହୋଇ ଜାଇ, ଲୋକେ କହନ୍ତି ଲୋ,
ତୁଳ୍ପ ଯେ ଥାଏ ପାହାଡେ ।

ନେଜ୍ ବନ୍ଧୁ ଥାଏ ଲମ୍ବ ଦୁଇ ଧାର
ଶୁଖି ଯାଇ ଥାଏ ମୁହିଁ;
ହେଲେ, ଠାବ ହାତ, କାଢି, କାହାକୁ ଲୋ
ନିବର୍ତ୍ତାଇ କରେ ଥପୁ ।

କାଳିଜାଇ ବଡ ପ୍ରତ୍ୟକ୍ଷ ଦେବତା
କୋଟି କୋଟି ଦଣ୍ଡବତ ।
ପାହାଡର ନାଆଁ ସଇଲେ ଖ୍ୟାତ ଲୋ
"କାଳିଜାଇ ପରବତ ।"

---

# ହରିଜନ

ଦୁଇ ଦିନ ହେଲା ଜୁଟି ନାହିଁ ଦାନା
ପତାଇଛନ୍ତି କେତେ ହାତ,
ମିଳିଅଛି ମୁହଁ-ମୋଡ଼ା ନାକ-ଟେକା
ମାତ୍ର ମିଳୁନି ଭାତ ।

ବିଶାଳ ନଗରୀ ପାଟଳିପୁର
ଲକ୍ଷୁଁ ଅଧିକ ଜନ,
ମୁଠାଏ ଅନ୍ନ ଖାଣି ବଞ୍ଚନ୍ତି
ଲଗେ ସବୁ ଅଭିଜନ ।

କାହା ଭରସାରେ ଚଳିବ ସେ ବନ୍ଧୁ ?
ଯୋଡ଼ାଏ ଯୋଡ଼ାଏ ପିଲ,
ଦଶଟି ବରଷ ଖୁଆଇ ପିଆଇ
ଘରଛି ଯା' ପାଖେ ଥିଲ ।

ଅଗତ ପଞ୍ଚେସେ ବୃହସ୍ତୁ ତା'ର
ମୁଦଲା ଯୁଗଳ ଅକ୍ଷି,
ଶୋଥ କାମଳକୁ ଠିକଣା ସେପେତେ
ରଖିନ ସେ କଣ୍ଟୁ ଧାକ ।

ଚଳିଗଲ ସୁଖେ ମାଇଚିଠାଏ ସେ
ଗୃହୁ ସ୍ୱର ଲଦ ଶିରେ,
ଅମଡ଼ା ପଥେ ସେ ମାଡ଼ିଚଳେ ଏକା
ନୟନ-ଅଶ୍ରୁ-ଧାରେ ।

ଢନିଠା ପରଶ ଚଳନ୍ତ୍ର ଠେଲି
କୁକ୍‌କୁଚ ଡହୁଁ ଘ୍ରାନ,
'ସୃଷ୍ଟିରେ କବା ପ୍ରୟୋଜନ କା'ର
କହୁବ କେ କେଉଁ ଦିନ ?

ବୈଶାଖ ମାସ ଶୂନ୍ୟ ସରଣୀ
ଦୁଇ ପହରଅ ଖର,
ଚୌଦଗୁ ଝାଅଁ ବରଷଇ, କୁଅ
କୋଇଲ ସ୍ୱପ୍ନ ପସ ?

ଏକାଳେ କାହାକୁ କହିବ ଦୁଃଖ ?
ପ୍ରାଣୁଁ ଉଠେ ଖାଲି କୋହ,
ଦେଖିଲା ପାର୍ଶ୍ୱେ ନିଭିଲ ସୌଧେ
ଉତ୍ସବ ସମାରୋହ ।

ଗତ ରଜନୀରେ ସରନ୍ଧ ବିବାହ
ଫିକା ଦିଶେ ସାଜସଜା,
ସରି ନଥିବ ତ ସାତ ଦିନ ଯାଏ
ଚର୍ବ୍ୟ ଚୋଷ୍ୟ ମଜା ।

ଡାକିଲା ବିକଳେ "ମାଅ ଠାକୁରାଣୀ—
ଶୁଣି ଏ ଗରିବ ଡାକ,
ବଳିଥିବ ତୁମ ଭୋଜନ ପାନ,
ଦେବଟେ ତ ଅଳ୍ପ ଶାକ ।

ଦିଅ ଅଣ୍ଟିକାରେ ଯା ଥିବ ଭାଗ୍ୟେ
ଅଳ୍ପ ତୋରାଣି ପାଣି,
ଉଡ଼ଇ ହଂସା ଯେବେ ମୋ ଦିନ—
ମନ୍ଦିକୁ ତନାଠା ପ୍ରାଣୀ ।"

ଅଇଁଠା ପତ୍ର ଗୁଣ୍ଡିଥିଲ ଅବା
ଅଦୂରେ ଶୀର୍ଣ୍ଣ ଶ୍ୱାନ,
ଅନାହୂତ ଜନ ଅର୍ଘ୍ୟରେ ଗୁହଁ
କଲା ବା ଶତ୍ରୁ ଜ୍ଞାନ ।

ଗୁରୁ ଗୁରୁ କର ଗର୍ଜନ୍ତ ଉଠଇ
ମତାଇ ନ ଦେବ ପାଖ
ଯମୁଁ ଭୀମରୂପ ! ନରେଖି ସଭୟେ
ଉଡଗଲେ ଦେଖି କାକ ।

କନ୍ୟାଟି ତାର ଯାଉଥିଲା ଅଶେ
କ ଅବା ଅଣିବ ଘୁଣି,
ଅଧିକ ଲୋଭରେ 'ମଚ୍ଛ ନାହିଁ' କହି
କର ଧରେ ମାଆ ଟାଣି ।

ସହସ୍ର ଡାକେ ଅଯିଲା ଦାସୀଏ
ଦନ୍ତୀ ପୃଥୁଳ-କାୟା,
'ଗୃହ ଧନ ହେଲା ବାହାଦର ଶେଷ'
କହେ, "ନାଆଁ ଦେବ ଥାଅ !,,

'ଅଜଯାଏ କାହିଁ ଶୋଇଥିଲ ? ଅଜ
କାଳକୁ ହଜିଲା କାଦ ?
'ସେ ଧନ ଥିଲେ ତୁ ଫୋପାଡ଼ ଥାନ୍ତୁ
ଖିଆପୁଖି ନାନାବିଧ ।

'ଅଜ ଯାଏ ଥିଲା, ବାସି ବୋଲି ଅଜ—
ଢାଳି ଦେଲେ ବାବୁଆଣୀ,
'ମିଠାଇ କାକର ଏର ଗଲା ଲାଳ
କଏ ଖାଆନ୍ତା କାଣି ।

'ଅସ୍ୱକଶ୍ୱ ଟିଣେ ପୋପାଡ଼ୁଛି ତା ମୁଁ ;
ଦେଖିବୁ କି ଥିବ ଅବା !
'ମେହେନ୍ତ୍ରର ଗାଡ଼ ଅପନା ଏ ଯାଏଁ
କହୁଥିଲା ବୁଢ଼ା ନବା ।

ଭାଗ୍ୟକୁ ତୋର ଥିବ ଯଦି କିଛି
କୁକ୍କୁର କୁଅ ମୁଗୁଁ ;
'ନାହିଁ, ନାହିଁ, କେହି ଯାଇ ନ ଥିବେ ତ
ସେଇ ଟିଣ ଭିତରକୁ ।"

କହିଦେଇ କ୍ଷଣେ ଅନ୍ତର୍ଦ୍ଧାନ !
ଅସ୍ୱକଶ୍ୱ ଟିଣ ଠାରୁ,
ପୃଥୁଳ କାୟାକୁ ବିକଳେ ନିରେଖି
ଧୀରେ ଲେଉଟିଲା ନାସ୍ତି ।

ହିଦଳିକ ତାର ସ୍ଥାନ ଅସ୍ଥାନ
ବାରଣ ତ ଚଳେ ନାହିଁ,
ବ୍ୟାକୁଳ କେନେ ଅସ୍କରଶ୍ୱ ଟିଣେ
କବା ଅଣ୍ଟୁ ଦେଲା ଗୁହିଁ ।

ଭାଗ୍ୟକୁ ତାର ଛୁଇଁ ନାହିଁ କେହୁ !
ପିଲାଟାଏ ଗଲା ପଶି,
ପାଉଁଟି ଅଟିକା ପୂର୍ଣ୍ଣ ହେଲା ତା
ନୟନ ଉଠିଲା ହସି ।

'ଦୁଇବେଳା ପିବ" ନାହିଁ "ତନ ବେଳା
ଖାଇଲେ ତା ରଖି ଥୋଇ"
ମୋ ଭାଗ ଅଧିକ, ଅଣିଛୁ ମୁଁ !'—କହେ
ପୁଅ ଉଲ୍ଲାସ ହୋଇ ।

ଖାଇଲେ ଯେତେକ ଗଛ ମୂଳେ ବସି
ଯାଉଥିଲା ସେହି ଶ୍ୱାନ,
ହସ୍ତ ଭାତରେ ଗୁହ୍ନିଁଲାର୍ ଝିଅ—
ଅନଦେ କରେ ଦାନ ।

ଅଙ୍କଣ ସେହି ଭୋଜନର ଶେଷେ
ଅଶୀର୍ବାଦର ପାଳି,
'ଧନ୍ୟ ବିଧାତା' ! 'ଜମିଦାର ବାବୁ—
ଜଇ ରହୁ' କହେ ବାଲୀ ।

ବିଧାତାର ସେହି ମଙ୍ଗଳ ଗାନେ
ଚେଡେ ବା ଦାସୀର ଭାଗ ?
ଯେ ଦେଖିଛୁ କାହୁ କ୍ଷୁଧିତ- ଶଦ୍ୟ—
ଅନ୍ତର-ଅନୁରାଗ ।

ଅନ୍ତମ ସେହି ଭୋଜନେ ତୃପ୍ତି —
ବର୍ଣ୍ଣିବ ? ନାହିଁ ବାଣୀ ?
ପ୍ରଭାତ ପୂର୍ବ ଅନ୍ତିମ ନନ୍ଦେ
ଜାଗ୍ରତ ତନ ପ୍ରାଣୀ ।

ମୂଷ ପୃଷ୍ଠେ ତନୁ ଜର୍ଜର
ମକ୍ଷିକା ଭଣ ଭଣ,
ସନ୍ଧି ଭିତରେ ହୋଇଛନ୍ତି ଯେ କେତେ
ବଦନୁ ଉଦ୍‌ବମନ;

କୁଞ୍ଚିତ ନାସା, ବିକଳ ବଦନ,
ନେତ୍ର କୋଟରଗତ,
ଊର୍ଦ୍ଧ୍ୱେ ଅନାଇ ଉଡ଼ ଯାଉଅଛନ୍ତି
ପକ୍ଷଣ ସମ୍ଭୂତ ।

ସାଉଁଠା ପିଠାରୁ ବାକି ଅଛି କେତେ !
ଖାଇବାକୁ ନାହିଁ ପ୍ରାଣ !
ଭୁଞ୍ଜ କର ତା ବମନକୁ ଗୃଟେ
ସେହି ପରଶତ ଶ୍ୱାନ ।

× × × ×

ତୀର୍ଥ ଭୂମି ସେ ପଥେ ଯୁଗେ ଯୁଗେ
ଦେବତାର ନିତ୍ୟ ବାସ,
ସେ ପଥେ ଗଲେଣି କେତେ ତଥାଗତ
କେତେ ଯେ ତୁଳସୀ ଦାସ ।

ସବୁ ଦିନ ପରି ଅଜି ସେହି ପଥେ
ଗାଇ ମୁଖେ ରାମ ନାମ,
ଘାଟରୁ ଚଳେ ସେ ଭକ୍ତ ଉଦାର
ସାରିବ ଗଙ୍ଗା ସ୍ନାନ ।

ଦେଖି ଏ ଦୃଶ୍ୟ ବିଭତ୍ସ ବିରୂ
ଶିହରି ଥିବ ଉଠେ,
ଅଶୌଚ ଭୟେ ଦ୍ୱିଗୁଣ ବେଗରେ
ରାମ ନାମ ମୁଖୁ ଛୁଟେ ।

ଗର୍ଜି ଉଠଇ ବୁଭୁକ୍ଷୁ ଶ୍ୱାନ !
—ଦନ୍ତ ପନ୍ତି ଦଶେ,—
ଜୀବନ ଯଜ୍ଞ ଅନ୍ତିମ-ରହସ୍ୟ
ଅଦ୍ଭୁତ ଚାଲଇ କି ନସ



# ନରବଳୀ

କାଳନ୍ଦୀଚରଣ ପାଣିଗ୍ରାହୀ

ରାଜ୍ୟ ପଡୁଛି ଶତ୍ରୁ କବଳେ
ସକଳ ଶିଳ୍ପ ତ ଗଲାଣି ତୁଟି
ଦେବତା-ଭୂଇଁରେ ମାନବ ନାହିଁରେ
ନ ମିଳେ କାହିଁ ତ ଭିକ୍ଷା ମୁଠି !

ଉଠେ ହାହାକାର ଦେଶ ଘରଦ୍ୱାର
କ୍ଷୁଦ୍ର କଳହ ରହୁଛି ବେଢି
ସାନ ସାନ ଜାତି ଧର୍ମର ଭେଦ
ସବୁରି ହାତରେ ଦେଇଛି ବେଢ଼ି ।

ସବୁରି ଅଧରୁ ହାସ୍ୟ ଶୁଖିଛି
ପଶୁଠାରୁ ହୀନ ମାନବ ଜାତି
କୁକ୍କୁରଠାରୁ ଘୃଣ୍ୟ ଅଧିକ
ପର ପଦାଘାତେ ନ ଜଳେ ଛାତି ।

ଗୁରୁ ଗୋବନ୍ଦ ଚିନ୍ତା-ମଗନ
ବଦନେ ତାହା'ର ବିଷାଦରେଖା,
ଦୁର୍ଦ୍ଦଶା ଘୋର ଅନ୍ତରେ ତାର
ବୋଳିଛି କରୁଣ କାଳିମା ଲେଖା।

ଦୀର୍ଘ ଶୃଙ୍ଖଳ ଦୃଢ଼ ଉଜଳ
ସିନ୍ଧୁର-ବନ୍ଦି କଣ୍ଠକେ ଭଲେ,
ନେବେ ତାହାଇ ଜଲେ ପ୍ରଭଞ୍ଜ
ଅଙ୍ଗ ଶୋହୁଛି କୃପାଣ ତାଲେ ।

ଶକ୍ତିଦେବୀର ଅର୍ଚ୍ଚନା କରି
ନିଦ୍ରା ନ ଜାଣେ ଦିବସ ନିଶି
ଶତ୍ରୁ ପୀଡ଼ାରେ ସ୍ୱଜ୍ୟ ତାହାର
ମୃତ୍ତିକା ପରେ ଯାଉଛି ମିଶି ।

ଶତ ସହସ୍ର ପରଜା ଭିତରୁ
ପାଞ୍ଚଟି ଚାର ମାନବ ଲୋଡ଼ା,
ମଣିଷ ପରି ଯେ ମଣିଷ ହୋଇବ
ନୁହଇ ବ୍ୟାଘ୍ର, ହାତୀ କି ଘୋଡ଼ା ।

ଜନ୍ମ ମାଟିର ଦୃପ୍ତ ନିଶାଣ
ଉଡ଼ାଇବେ ଯେହୁ ଗଗନ ତଳେ,
ଫେରାଇ ଆଣିବେ ଅବାଧ ସ୍ୱସ୍ତି
ଆତ୍ମା ନିଜର ଓଠାର ବଳେ,

ଫେରାଇ ଆଣିବେ ଦେଶ ଜନନୀର
ଗତ ଇଜ୍ଜତ ମହତ ଯେହୁ;
ପାଞ୍ଚଟି ବୀର ଲେଣ୍ଡା ଆଜି ତାର
ଅଜ୍ଞାତେ ଦେବେ ରକତ ଦେହୁଁ ।

× × × ×

ଶକ୍ତି ଦେବୀର ବନ୍ଦି ଚରଣ
ଗୁରୁ ଗୋବିନ୍ଦ ହୋଇଲେ ଉଭା
ବାହୁରେ ଖେଳଇ ଉଷ୍ଣ ରୁଧିର
ବକ୍ଷେ ତାହାର ଜାଗଇ ଯୁବା

ବିଦ୍ୟୁ ସମାନ ଉଠିଲା ଚମକ
ସହସା ମାନସେ ଉପାୟ ଏକ
ବାଛିବ ପାଞ୍ଚ ସେନାପତି ଚେହୁ
ଜନ୍ମଭୂମିର ରଖିବ ଟେକ ।

ଶିଷ୍ୟ ସକଳ ଆହ୍ୱାନ ଭାଷେ
"ଦେବତା ଆଜି ରେ ମାଗିଛି ବଳି,
"ମାତାର ସ୍ନିଗ୍ଧ ନୟନ ଯୁଗଳୁଁ
ଦେଖ ରୋଷାନଳ ଉଠଇ ଜଳି ।

"ମାନବର ମଥା ପାଞ୍ଚଟି ଲୋଡେ
ରକ୍ତ ପିଇ ସେ ଲଭିବ ତୋଷ
"ଜନମ ଭୂଇଁକୁ କରିବ ମୁକ୍ତ
ଖଡ୍‌ଗେ ଚୂରିବ ଶତ୍ରୁ-ରୋଷ ।

"ରକ୍ତ ଲୋଡ଼ୁଛି ପଞ୍ଚ ପ୍ରାଣୀର
ମୁଣ୍ଡମାଳଗୀ ଚଣ୍ଡୀ ଅଜ
"ଦେଖ ଲହ ଲହ ଜିହ୍ୱା ତାହାର
ରକ୍ତ ମାଗଇ ଦନ୍ତ-ସ୍ରଜ

"ମାତୃଭୂମିର ଯଜ୍ଞ ବେଦୀକୁ
କିଏ ରେ ଯୋଦ୍ଧା କରିବ ପୂତ
ଆହ୍ୱାନ ଶୁଣି ରକ୍ତେ ଏ ମାଟି
ସିକ୍ତ କର ହେ ଅଗ୍ରଦୂତ !"

× × × ×

ସ୍ପନ୍ଦନହୀନ ବସୁନ୍ଧବନ
ସୂଚିର ପତନେ ହେବ ଶବଦ
ଗୁରୁ ଗୋବନ୍ଦ ଗମ୍ଭୀର ନାଦେ
କ୍ଷଣେ ସେ ଜନତା ହେଲା ତବଧ ।

ହୃଦୟ ଭେଦି ବାଜିଲା ସେ ବାଣୀ
କନ୍ଦର ଓଚ୍ଛାଳି ଉଠିଲା ଧ୍ୱନି,
ହଜାର ଶିଷ୍ୟ ଜଡ଼ ପ୍ରସ୍ତର
ଭୀତ ଶଂକିତ ସାରା ଅବନୀ

ରକ୍ତନୟନା ଦେବୀ ସମ୍ମୁଖେ
ବଳିର ସ୍ତମ୍ଭ ରହିଛି ପୋତା,
ଦେବୀ ସିନ୍ଦୂର ହସ୍ତରେ ଧରି
ତାଙ୍କର ଯଜ୍ଞେ ପ୍ରଥମ ହୋତା—

"ଦେଖି ସିନ୍ଦୂର କପାଳରେ ଯେବେ
ସ୍ତମ୍ଭେ ଦେବ କି ପଡାଇ ଗଲା
"ନୀରବ ଏସନ କାହିଁକି ହେ ବୀରେ !
ଜୀବନ କି ତବ ଉଭେଇ ଗଲା ?

"ଜନ୍ମଭୂମିର ମୁକ୍ତି ଲଗି ରେ
ଭଗୀରଥି ଆଜ ହୋଇଛୁ ଲୋଡା ?
"ଛି, ଛି, କାପୁରୁଷ ରହିଛ କାତର
ଅଙ୍ଗାର ସମ ହେଲ କି ପୋଡା ?

" ନିଜ ଉଚ୍ଛତ ଧନ ମାନ ଆଜ
ପର ହାତେ ଦେଇ ମାଗିବ ଭିକ,
" ପଦଲେହନକୁ ମଣିବ ଭାଗ୍ୟ
ଏସନ ଜୀବନ ଧିକ ରେ ଧିକ !

"ଆଗରୁ ତାହାର ରକ୍ଷିବ ନିଜ
ଏ ମାଟି ନିଜର ରକ୍ତଧାରେ
"ଆସ ଅଖ୍ୟାତ ଆସ ଅଶ୍ରୁତ
ଆସ ଉଛିତ ଜଗ୍ର ଅରେ !"

× × × ×

ଗୁରୁ ଗୋବିନ୍ଦ ବାକ୍ୟ ବାଣରେ
ଚେତନା ଆସିଲ ସକଳ ପ୍ରାଣେ
ଏକୁ ଏକେ ବୀର ହେଲେ ଗୁହାଁ ଗୁହାଁ
ପୁଣି ସେ 'ଗୁରୁ'ର ଖର କୃପାଣେ

କୃତାନ୍ତ ସମ ନିଷ୍ଠୁର 'ଗୁରୁ'
ଯଣେ ଗଡ଼ାଇବ ଭୂତଳେ ମଥା
ମୂର୍ଚ୍ଛିବ କିଏ କେସନ ଜୀବନ
ମନେ ପଡ଼େ ପ୍ରିୟଜନର କଥା

ଜନତା ଗହଳୁଁ ଶାନ୍ତ ମୂରତି
ଅମାୟିକ ଏକ ଯୁବକ ସାର
ଧୀର ପଦେ ଅସି ନୂଆଁଇଲେ ମଥା
ବଦନେ ଲଗିଛି ହାସ୍ୟଗାର ।

କପାଳରେ କେଇ ସିନ୍ଦୂର ଟିକା
ବୋଲେ ଗୁରୁ "ହେଲା ଗୋଟିଏ ବଳି
"ଅଉ ଗୃହ ଗୋଟି ଲୋଡ଼ା ଏହାପର"
ଶାଣିତ ଖଡ଼୍ଗ ଉଠିଲା ଝଳି ।

ଏକ ଏକ ହୋଇ ଅଉ ଗୃହଜଣ
ନମିଲେ ଗୁରୁର ଚରଣତଳେ
ସବୁର ବଦନେ ହାସ୍ୟ ଫୁଟଇ
ଶାନ୍ତ ମୂରତି ବଚନ ବଳେ ।

ଅବାକ ଜନତା ରହିଛି ଚକିତେ
ବଡ଼ କାତର ହିସ୍ତା ସକଳ
ଗୁରୁ ଗୋବିନ୍ଦ ନୟନ ଯୁଗଳୁଁ
ବହେ ଦୁଇ ଧାର ଅଶ୍ରୁଜଳ ।

ଏକ ଏକ କର କୋଳେ ନିଏ ଗୁରୁ
ଗଦ୍‌ଗଦ ହୋଇ କହଇ ବାଣୀ
ହଜାର ଭିତରୁ ପାଞ୍ଚଟି ଏହି
ମଣିଷ ପାଇଲ୍ ଅଜ ମୁଁ ଜାଣି ।

ଜନ୍ମଭୂମିର ଟେକିବେ ନିଶାଣ
ଶତ ଶତ ସେନା ଗୃଳ୍‌ଠବ ଏଥୁ
ନୁହେ ଦେବୀ ବଳି ରକ୍ତ ଢାଳବେ
ଜନ୍ମମାଟିର ଲାଗି ସେ ଦେହୁ



# ଓଡ଼ିଯ୍ୟା ପଖାଳ- ଭାତ

ବୈଷ୍ଣବ ଚରଣ ଦାସ ।

ମୁଣ୍ଡିଅ- ମୁଣ୍ଡର ଖେଳୁଅଛି ବାଅ
ଚକା ଭଉଁରିରେ ବନ୍ଧ
ମୁକ୍ତ ଆକାଶର ତୁଙ୍ଗ ଶିଖରରୁ
ଝରୁଥିଲା ବନ୍ଧ ରନ୍ଧ

ଜନମନ ଛୁଆଇ କେବେ ଚାଲୁଥାଏ
ନଣ୍ଡା ବରଗଛୁଁ ଉଠି
ଭଗ୍ନ ଦେଉଳେ ଭେଦ ପବନ, ଅବଶେଷ
ପଲାଇ ଅସେ ଲେଉଟି !

ଆକାଶ- ମୁକ୍ତ ଶୂନ୍ୟ, ପବନ—
ପୂର୍ଣ୍ଣ ହରଷ - ଧାର
—ଜମ୍ବାଇଛି ପତ୍ର ଜହ୍ଳଳର ଦେହେ
ଜମ୍ବୁ- ଗଉରବ- ମାଳା !

"ବଜା, ବଜା, ବଜା, ସେନାପତି ପୁଅ
ବଜା ରେ ଖରେ ମହୁରୀ
"ବର୍ଗୀ ଖଣ୍ଡ ପଶି ଗାଆଁ ମୁଣ୍ଡେ !", ବୁଢା—
ପାଇକ ଘୁଡ଼ନ୍ତି ହୁରୀ ।

ବୁଢା ପାଇକ ସେ — ପାଇକ ଗ୍ରାମର
ବହୁ ଦିନେ ଥିଲା ନେତା—
ବୀରର ସନ୍ତାନ, ବୀରଙ୍କ ଜନକ—
ଶତ୍ରୁ ଜଣା ଚିରଜେତା !

ବୀରପୁତ୍ରେ ଅଜି ବୃଦ୍ଧେ ରଖି ସ୍ଥାନେ
ଯାଇଛନ୍ତି କାହୁଁ ରଣେ
ପାଇକ-ଗ୍ରାମର ରକ୍ଷକ ଏ ବୃଦ୍ଧ—
ଅଉ ନାହୁଁ କେହି ଜଣେ !

ବୁଢା ଥର ଥର ହାତଟି ପକାଇ
ମୁଣ୍ଡେ, ଶୁଣୁଅଛି ଖରେ
ଗମ୍ଭୀର ଧ୍ୟାନମଗ୍ନ ଅଖି ଯୋଡ଼ି ଢଳେ
ବୁହିଁ ଅଛି ଗ୍ରାମପାରେ ।

"ବଜା, ବଜା, ବଜା ବଜାରେ ମହୁରୀ
ସେନାପତି ଉଠ ବଜା" !
କମ୍ପମାନ କଣ୍ଠେ ଡାକ ଦେଲା ବୃଦ୍ଧ,
"ଗାଆଁ ମୁଣ୍ଡେ ଅସି ବଗୀ ।"

ମନ୍ତ୍ରବିଦ୍ୟା ବୁଢା ନାଥ ସେନାପତି—
କାନରେ ବାଜିଲା ଡାକ
ମନେ ପଡ଼ିଗଲା ବୁଢ଼ା ସଙ୍ଗେ ଗତ
ବିଜୟ ବାଜଣାଯାକ ।

ମନ୍ତ୍ର ବଳେ ଉଠି ଶତସ୍ମୃତି-ଯୁକ୍ତ
ମହୁରୀରେ ଦେଲା ଫୁଙ୍କ,
ଥରେ ଉଠେ ପଡ଼େ ବାଜୁଛି ମହୁରୀ—
ବୁଢ଼ାର ନ ଛୁଟେ ଫୁଙ୍କ !

ଭୁଲିଗଲା ସବୁ-ନାୟକର ଡାକ—
ଗାଆଁ ମୁଣ୍ଡେ ପିଦା କଥା,
ସବୁ ଭୁଲି ସେ କୁହାରିରୁ କାବା
ବାଉଛି ଅତୀତ କଥା ।

ପାଇକ-ପଗରେ ଖେଳିଲା ବିଜୁଳି
ମହୁରୀ ଶବଦ ସଙ୍ଗେ
ବିହ୍ୱଳ ଉଲ୍ଲାସେ ଧନୁ ଶର ଟେକି
ନାଚିଲା ସମର-ରଙ୍ଗେ ।

ମନେ ଖେଳିଗଲା ଯଉବନ କଥା—
ଯେତେ ଗଉରବ ରଣ
ଷଣ୍ଡେ କୁତୂହଳୀ ନାରୀଙ୍କୁ ଅନାଇ—
ମରଣ କଲା ସେ ପଣ ।

ଏକ, ଦୁଇ, ତିନି—ଗୃହେଷ୍ଟା ସବାର
କାହୁଁ ଦେଖାଦେଲେ ଅସି
ନିଃଶବ୍ଦ ସରଣେ ଘୋଡ଼କ ଛୁଟାଇ
ଉଡ଼ାଇ ଧୂଳିକା-ରାଶି ।

ନାଚୁ ନାଚୁ ବୁଢ଼ା ବାଉଳାଙ୍କ ପରି
କ୍ଷଣକେ ହୋଇଲା ସ୍ଥିର
କ୍ଷଣକେ ଶିଥିଳ ଓଠଟି କାମୋଡ଼ି
ଧନୁରେ ଯୋଖିଲା ତୀର ।

ଟଳ ଟଳ ପାଦ ହସ୍ତ ଥର ଥର
ଶ୍ରମଝାଳ ବହେ ଖର,
ଦୂରୁଁ ଏ ମୂରତି ଦେଖି ଚୋର ମନେ
କାହୁଁ ପଶିଗଲା ଡର !

ଋଷି ଅଶ୍ୱବେଗ ବଲ୍ଗା ନମାଇ
ବରଗି ରହିଲେ କ୍ଷଣେ,
କ୍ଷଣେ କି ବଗୃର ଭିନ୍ନ ଭିନ୍ନ ଢଙ୍ଗେ
ଖେଳିଗଲେ ଜଣେ ଜଣେ ।

ସହସା ଗୃହେଁ ଗୃହଦରେ ଛୁଟି
ବୃନ୍ଦେ ପକାଇଲେ ଘେର,
ବୃଦ୍ଧ-ଯୋଖା ଧନୁଃଶର ଗୃହଦ୍ୱାରେ
ଧରି ନାଚେ ଫେରି ଫେରି !

ବରଗୀ ସବାର ଜାଣିଲା ନିଶ୍ଚିନ୍ତ
ଅଟଳ ଅଚଳ ବୀର,
ଭରସି ନ ପାରେ ତାରମୁହେଁ ଆସି
ଦେବାକୁ ବଳି ତା ଶିର ।

ପ୍ରବୀଣ ପାଇକ ନ ଛୁଟେ ତା ଶର—
ମାର ଚୋଟାଏ ବଇଶୀ
ନାହିଁ କିଛି ଫଳ—ଯେଣୁ ପରକ୍ଷଣେ
ଆନ ବରଛିରେ ମର !

ନାହି ନାଚି ତେଣୁ ଶରମୁନେ ହୀରୁ—
ଦସ୍ୟୁଙ୍କୁ ରଖିଲ ଦୂରେ,
ପ୍ରାଣ ଥିବାଯାଏ ଗ୍ରାମ-ରକ୍ଷକ ସେ
—ଶତ୍ରୁ ନ ପଶିବ ପୁରେ !

ବୃଥା ରଣ ଦେଖୁଥିଲ ଅନ୍ତମନେ
ଦୂରୁ ଏକ ଅଶ୍ୱାରୋହୀ,
ଶିଙ୍ଗା ଫୁଙ୍କି ଅଶ୍ୱ ଛୁଟାଇ ନିମିଷେ
ଆସି ପ୍ରବେଶିଲ ତହିଁ ।

ଯିଏ ଯେଉଁ ଠାରେ ଥିଲେ ସେ ଗୃହେହିଁ
ରହିଲେ ସେଠାରେ ସ୍ଥିର,
ନବ ଅଶ୍ୱାରୋହୀ — ନାୟକ ପର ସେ—
ବୃଦ୍ଧ ଅପୂଇଷ୍ଟ ଗୀର—

"ପାଇକ ବୁଢ଼ାରେ, ଅଛୁ ତୁ ପୂରୁଣା—
ବରଗୀଙ୍କ ସଙ୍ଗେ ବାଦ
"କର କି ପାଇବୁ, ପ୍ରାଣଟି ହାରିବୁ—
ମେଣ୍ଟିଯିବ ସବୁ ସାଧ ।

"ଅଛୁ ତୁ ଓଡ଼ିଆ, ଓଡ଼ିଆଙ୍କ ପର
ପଳା, ଘରେ ଯାଇଁ ଶୁଅ —
"ମୁଣ୍ଡଟି ରଖିବା ଇଚ୍ଛା ଥାଏ ଯଦି
ନିଶକୁ ଏଠାରେ ଥୁଅ ! "

ଏହା ବୋଲି ବର୍ଗୀଦର ନିଜ ମୁଛେ
ମହା ସମାଦରେ ହାତ
ପକାଇ ହସିଲ ହଙ୍କାରି ଉଠିଲା
"ଓଡ଼ିଆ ପଖାଳ-ଭାତ —

"କେତେ ପାଇକ ତୁ ଦେଖିବା ରେ ବୁଢା
ନିଶ ମୋର୍ ଦେଖି ଥରେ । "
ଅପଦ ମସ୍ତକ ଥରୁଁ ଥରୁଁ ବୃଦ୍ଧ
ମାତା ଭଗବତୀ ସ୍ମରେ ।

"ଅଚ୍ଛା ହେଉ" ବୋଲି ଅସ୍ଥାଳ ସଦମ୍ଭେ
ରହିଲା କ୍ଷଣକେ ସ୍ଥିର
ପରକ୍ଷଣେ ଦର୍ପେ ଛାତିକୁ ଫୁଲାଇ
ଓଠାର ଧରିଲା ତୀର—

ବରଗିଏ ବୁଲୁଁ ଦେଖିଲେ ସଭଏ
ବୁଢା କରିଅଛି ନାଶ,
ସରଦାର ମୁଣ୍ଡ ଏଣେ ହାତ ତାର
ଧରିଲାଣି କଣ୍ଠ ପାଖ !

"ଦେଖ, ଦେଖ !" ବୋଲି ତୀରସହ ହାତ
କଣ୍ଠପରେ ରଖି ଦଣ୍ଡେ
ଦେଖୁଁ ଦେଖୁଁ ବୁଢା ଛାଡ଼ିଦେଲା ଶର
ବରଗୀନାୟକ ଗଣ୍ଡେ !

ସରଦାର ଏଣେ ଶିଙ୍ଗା ଫୁଙ୍କି ଅଙ୍କ
ଦେଉଥିଲେ "ମାର ମାର",
କଣ୍ଠପରେ ହାତ, ଶିଙ୍ଗାଟିରେ ମୁଖ—
ଅଧରେ ହାସ୍ୟର ଗାର

ଫୁଙ୍କା ହେଲା ନାହିଁ ଶିଙ୍ଗା ନାୟକଙ୍କ
ଅକୁହା ରହିଲା କଥା
ପଡ଼ିଲା ଧରଣୀ-ତଳେ ବୀରବର
ସହ କଣ୍ଠ ସହ ମଥା !

---

# ନାପିତୁଣୀର ଗାନ୍ଧୀ-ପୂଜା

ମାୟାଧର ମାନସିଂହ

— ୧ —

ଆସିବେ ମହାତ୍ମା ଗାନ୍ଧୀ ପଡ଼ଶ ଜଙ୍ଘାରେ
ଶୁଣେ ଗ୍ରାମ-ନାପିତୁଣୀ ତା ଗ୍ରାମଡୋଷ୍ଟାରେ ।

ବାନ୍ଧୁଛନ୍ତି ସ୍ୱେଚ୍ଛା-ସେବୀ ତାଳପତ୍ର-ବାସ,
ଲଗିଅଛି ଜନତାର ଦ୍ରୁତ ଯାଅ ଆସ ।

ଦେଖୁଛନ୍ତି ନବ ଲୀଳା ଗ୍ରାମ-ନର-ନାରୀ,
ହେଉଛନ୍ତି ଭୁହାଭୁହ ପରସ୍ପରେ ।

କି ଦେବେ ଗାନ୍ଧୀରେ ଭେଟି; ଦରିଦ୍ର ସକଳେ—
ହେଲେ କି ଦେବତା-ଦେଖା ହେବ ଭକ୍ତ-ଘରେ ?

ରିକ୍ତ ହସ୍ତେ କରିବାକୁ ସନ୍ଥ-ଦରଶନ
ଦରିଦ୍ର ହେଲେହେଁ ତାଙ୍କ ମାନୁ ନାହିଁ ମନ ।

ଧନୀ ଧନ ନାପିଛୁଣୀ ଭାବେ ମନେ ମନେ—
ମୁଁ କିସ ବଢ଼ିବି ନେଇ ? କିଛି ହେଲେ ଅନେ

ଦେଇ ଅର୍ଚ୍ଚିବେ ସେ ପୁଣ୍ୟ ଚରଣ ଯୁଗଳ,
ମୋର ତ ସେଲାଗି ନାହିଁ କିଛିହିଁ ସମ୍ବଳ !

ତେବେ କି ଏ ପୁଣ୍ୟ ଦର୍ଶ ଯିବ ଖାଲି ଖାଲି !
ଦ୍ୱାରେ ମୋ ବାରୁଣୀ-ବୃକ୍ଷ ; ପାତକ ପଖାଳି

ପାରିବନି ପାତକମୀ ? ପତିତ ପାବନ;
ହେ ଦେବତା ହେ ମହାତ୍ମା, ହେ ଗାନ୍ଧି-ସ୍ୱଜନ,

କୋଟି କୋଟି ନରନାରୀ ନମନ୍ତି ପଦ୍ମରେ
ଦରିଦ୍ର ମୁଁ ନାହିଁ ବୋଲି ଧନ ମୋହ କରେ

ପାରିବନି ବନ୍ଦି ତବ ପରମ ଚରଣ,
ପାଇବନି କିଛି ତବ ପୁଣ୍ୟ ବିତରଣ ?

ଜୀବନେ କରିନି ପୁଣ୍ୟ, ନିରକ୍ଷର ନାରୀ,
ଅଜ ଏ ବୟସେ, ମାଥେ ବହୁ ପାପ ଭାର

ଭବଇ କରିଲେ ହେଲେ ତୋର ପଦାର୍ପନ
ହୁଅନ୍ତା ବା କିଛି ହେଲେ ଧର୍ମ ଅରଜନ ।"

—୨—

ପ୍ରଭାତିଲା ବସୁନ୍ଧରା, ପଡ଼ିଲା ଚହଳ
ଗ୍ରାମ-ଉପବନେ ଯହିଁ ଗାନ୍ଧୀ, ଗାନ୍ଧୀଦଳ

ହୋଇଲା ଅସି ଉପଗତ । ପଡ଼ିଲା ବଗ୍ଗୁର—
ନାପିତ ନାହିଁ ଏ ଗ୍ରାମେ ? ହୋଇବେ ଫସ୍ଥାର

ମହାତ୍ମା ଏ ପ୍ରଭାତରେ ! —ସ୍ୱେଚ୍ଛାସେବକଗଣ
ଧାଇଁଲେ ତ୍ୱରିତେ ଗ୍ରାମେ କରି ଅନ୍ୱେଷଣ ।

ଫେରିଲେ ଯେବେ ସେ ପରେ, ପୂର୍ବ ନାପିତୁଣୀ
ପଛେ ତାଙ୍କ, ଅକ୍ଷି ଭୂମେ, ମୁଖେ ନାହିଁ ବାଣୀ ।

ସୁମଣ୍ଡିତା ଓଡ଼ିଆଣୀ ଅସ୍ତ୍ର-ଅଳଙ୍କାରେ,
ଇଂଗ୍ରାଜ୍ୟ ନାୟିକା ଯେସନ୍ତେ ଚଳେ ଅଭିସାରେ !
ସ୍ତବ୍ଧ ସର୍ବ ସଭ୍ୟ-ଜନେ, ଗାନ୍ଧୀ ସ୍ମିତେ ହାସେ
ନାପିତୁଣୀ ଆଗମନେ, କୌତୁକ-ରଭସେ !

ସାଷ୍ଟାଙ୍ଗ ମହାତ୍ମା ହସି 'ଅଚ୍ଛା ତ ଏ କଥା !'
ନାପିତୁଣୀ କ୍ଷୁର ପକ୍ଷେ କଲୁ ପୋତ ମଥା

ଏକ ଯୋଗେ ଏକ ମନେ, ଧୀରେ ଦେଇ ଜଳ;
ମହାତ୍ମା ସହିତେ ସ୍ତବ୍ଧ ସର୍ବ ସଭାସ୍ଥଳ ।

କଟମ ସେ ପରଖି କ୍ଷୁର, ମୁଣ୍ଡେ ଥାପି କର
ନିରଖିଲା ଓଡ଼ିଆଣୀ କରିଲା ଉଜ୍ଜ୍ୱଳ

ପତିତ-ପାବନ ମହା-ମାନବ ଗାନ୍ଧୀରେ
ମସ୍ତକେ ବୁଲାଇ ଅସ୍ତ୍ର, ହସ୍ତ ଦେଇ ଧୀରେ

ଦୁଇ ଗଣ୍ଡେ, ଶତ୍ରୁଙ୍କରେ ପରମ ଆଦରେ
ଅଣିଲ ବୁଲାଇ ଖୁର ଚରଣ ଯୁଗଳେ

ନମି ପୁଣି ନଖପନ୍ତ୍ର କରିଲ ନିର୍ମଳ
ଯେତେ ମନେ ଦେଇ ତାର ସମଗ୍ର କୌଶଳ ।

ପୁଚ୍ଛରନ୍ତେ ଗାନ୍ଧୀ ତାରେ "ପିନ୍ଧିଛ ଜନନୀ !
ଏ ଯେଉଁ ଭୂଷଣ-ଭାର କ ଲଭ କହ ନା—

ହୁଅଇ ଏଥିରେ ତବ !"—ଭାଷଇ ଗଦ୍ ଗଦ
ନାପିତୁଣୀ ସ୍ନିଗ୍ଧ-କଣ୍ଠେ—"ମୋହର ସମ୍ପଦ

କହିଁଛି ଯେ ମହାତ୍ମାଗ, ପାଇବ ଭୂଷଣ !
ଏ ସବୁ ଅଣିଛି ମାତ୍ର ତୁମରେ ଦର୍ଶନ

ଲଭିବ ବୋଲି ମୁଁ ଆଜ । ବିନା ଭୂଷଣରେ
କେମନ୍ତେ ଅସନ୍ତ୍ର ଦେଖି ଦେବତା ତୁମରେ ?

ତାପରେ ତା କରେ ଯେବେ ଗୁଞ୍ଜିଲେ ତା ମୂଲ
ଗାନ୍ଧୀଙ୍କର ପାର୍ଶ୍ୱଜନେ; ଭୁବତେ ତା ଠୁଲ

କରି ଧୀରେ ଗାନ୍ଧୀଙ୍କର ଚରଣକମଳେ
ଜୀବନର ପୁଣ୍ୟ ସେବା ନାପିତୁଣୀ ଚଳେ ।

---

# ମରିନାହିଁ ସେ ତ ମରଣ-ଜୟୀ

ରାଧାମୋହନ ଗଡ଼ନାୟକ

କାଳ ମନ୍ୱନ୍ତର ପଡ଼ିଥିଲ ଘୋର ଭୟଙ୍କର
ନ' ଅଙ୍କର ।
ସୁନାର ଅମର ଉତ୍କଳ ତାର କାଳିମା ଛୁଇଁ ।
ହାଡ଼ମାଳ ଦେହ ଦିଶୁଥିଲା ସତେ ମଶାଣିଭୂଇଁ ।
ଲକ୍ଷ୍ମୀର ଦେଶ ହୋଇ ଯାଇଥିଲ ଅନ୍ନା କି ଦୂର !
ହା ଅନ୍ନ ଡାକେ ପୂରି ଉଠୁଥିଲ ପଲ୍ଲୀପୁର ।
ଦୁଇ ଦାନା ଧାନେ ନ ପାଇ ଭୋକ
ଟଁଉପୋକ ପରି ଟଁଉ ପଡ଼ୁଥିଲେ ବହୁତ ଲୋକ ।
କଳନା ନାହିଁ,
ହାଇ ରେ ହାଇ ।

କାହିଁକ କାଳାର ଅଜଣା ସେ କେଉଁ ପଲ୍ଲୀ କଣେ
ଜଙ୍ଗଲ କଣେ,
ବାର ବରଷର କେବଳ ଭଙ୍କାସ୍ତ ବାଳକଟିଏ
ମରଣର ଦାଉ ଜୟ କରିଥିଲା ମରତ ଧାମେ ।
ତା' ଗୀତ ଆଜି
ଆକାଶ ବତାସେ ପ୍ରତି ନିଶ୍ୱାସେ ଉଠୁଛି ବାଜି ।

ସନାତନ ତେବେ ଘ'ର ଦୁଖେ
ଦୂର ଗ୍ରାମେ ଯାଇ ଭିକ ମାଗୁଥିଲା କାତର ବୁକେ ।
ସବଏ ଅତୁର ବଞ୍ଚାଇବାକୁ ଜୀବନଟିକ
ଏତେବେଳେ ଭଲା କିଏ ସେ କାହାକୁ ଦେଉଚି ଭିକ ॥

ଦୁଇ ଦିନ ଯାଇ ତିନି ଦିନ ହେଲା ତଥାପି କାହିଁ
କଟ ଠେଲ ତାହାର କ୍ଷୁଦ ମୁଠାଏ ବି ଜୁଟିଲା ନାହିଁ ॥
ଚରକି ପରଏ ଘୂର ଘୂର ସ୍ପିଏ ହୋଇଲା ଅଥା
ଘେଁ ଘେଁ ଭାର ଘୂରିଲା ମଥା ।

ସାତଅଠ ଘର ଦ୍ୱାରବାର ପରେ ଫିଟିଲା ମୁଦ
ସା'ନ୍ତର ଘରୁ ପାଇଲା ଯେବେ ସେ ଦଉଁଟି ଖୁଦ ।
କପାଳେ ଲଗାଇ କହିଲା, "ପ୍ରଭୁ,
କାହିଁ କଶାଇବ ? ବାଳୁତର ଦୁଃଖ ଜାଣ ତ ସବୁ ।"

ଠିଆ ହେଲା ଯହୁଁ ଅର ଦୁଆରେ,
ପଧାନ ବୁଢାଟି କହିଁଲେଇ ତାକୁ କହିଲା, "ବା' ରେ
ଦେଇଥିଲେ ପ୍ରଭୁ ଧନସମ୍ପଦ ସହାସୁଖରେ
ଦିନ ଯାଉଥିଲା—ପୁଅ-ଝିଅ-ଶିଶୁ-କଉତୁକରେ ।
ଏଇକ୍ଷିଣି ଅମେ କାଙ୍ଗାଳ ଜାଣ ତୋହର ପର
କାହିଁ ମୁଁ ଦେବି ରେ ଦୁଇଦିନ ହେଲା ଜଳି ନି ଚୁଲି ।

ସେଇ ଯେ ଦିଶୁଛି ହୋଇଲା କୋଠା
ସେଇଠିକି ଗଲେ ମିଳିପାରେ ଅବା ମୁଠେ ଦି' ମୁଠା ।"

ଡାକିଲା ଯାଇ ସେ ଜମିଦାର ଘର ଫାଟକ ଅଗେ,
ଦଣ୍ଡକ ପରେ ଦାସୀଟାଏ ଭ୍ରୁ'ର ପଡ଼ିଲା ରାଗେ ।
"ଭିକ ତ ମାଗିବୁ କଅଁରେ ଏଡ଼କ୍କା ପାଟିଟେ କରୁ ?
ସା'ନ୍ତେ ଉଠିଲେ ଛୁଡ଼ିପିବ ତୋର ପିଠିରୁ ଗଲ୍ଲ ।
ଏଇଠି ପଡ଼ିଛି ଏଇଠି ଭୁମର ହୋଇଛି ଠିକ
ଧନ ସବୁ ଖାଲି ନିକଳେଇ ଖାଉଛ ଭିକ-ଭିକ ।"

**ଅନ୍ଧୁରି ଡାସ**

"ଅରଜି ଅଣି କି ଥୋଇ ଦେଇଅଛୁ ତମର ବାପ ?"

ଭିକାରୀର ବୁକେ ବଠେନ୍ଦ୍ର-ନିଅଁ ଉଠିଲା ଜଳି
ପୁଣି କି ଅବେଶେ ନୟନ କ୍ଷଣେକେ ଗଲା ତ ମରି ।
ସନାତନ ତହୁଁ ଉତ୍ତର ଦେଲା ଭାରି ନରମ,
"ଦାତା ଅରଜିଛି ଦେଲେ ତାର ହେବ ଭାରି ଧରମ ।'

"ଧଅ ଧଅ ବେଗେ ପଡ଼ିଛି ମୋହର-କାମ ବହୁତ
ପୋଲାଖିଅ ସାଥେ କେ କହି ପାରିବ ?"
କହୁ କହୁ ତ

ଗୁଡ଼ଲ ଟୁଠିକ ରମ୍ପିକେ ଅତ.ରମ୍ପିଲେ
ଛୁଅାଡ଼ ଦେଲା ମୁକୁଲା ତାହାର ଅଞ୍ଚଲେ ।

ଗୁଡ଼ିଆ ଦୋକାନ ଦେଖିଲା ଯାଉଁ ସେ ଅଳପ ଦୂରେ
"ମୁଢ଼ି ମୁଠେ ଟିକୁ" ଜଣାଇଲା ବଡ଼ କାତର ସୁରେ ।

ଦୋକାନୀ କହିଲା, "ମୁଁ ବେବସାୟୀ
ବଜାକଣା ଯାଗା, ଏଠି ଯେ ଖୋଜୁଛୁ ମାଗଣା କାହିଁ ?"

"ତିନି ଦିନ ହେଲା ମରୁଚି ହୁଇ ଓଃ ଗୁଡ଼ିଆ ସାଉ,
ମୁଠେ ଦିଅ, କସ ଲାଗୁଚି ଅଉ ?"

"ଯା, ଯା ଏଠୁ ଦେଇ ଦେଇ ଅମେ ମଲୁଣି ଭଲା
ଭୁଇ ମରିଗଲେ ସଂସାରେ କାର କଅଣ ଗଲ ?"

ଫଅଁ କରି ଗୋଟେ ନିଶ୍ୱାସ ମାରି ହତାଶ ବୁକେ
ଦାଣ୍ଡେ ଦାଣ୍ଡେ ବୁଲିଲା ବାଳକ ଭ'ରି ଦୁଖେ ।
ଲୁଅଟେ କାହିଁ ।
ତୃଷ୍ଣ ପେଟର ଗୁହଁଲା ନାହିଁ ।

ଗାଁ ମୁଣ୍ଡରେ ଗୁଳ ଘରଟିଏ—ମୁହଁରେ ତାର
ବଉଳ ଗଛଟି ମେଲିଚି ପତର-ଗହଳ ଡାଳ ।
ବସି ଗଲା ସେଇ ପିଣ୍ଡାପରେ
ଅକାଶ ପାତାଳ ଭାଳିଲା ବହୁତ ମରମ ତଳେ ।

ଘଡ଼କେ ସେ ଘରୁ ବାହାରିଲା ଜଣେ ପ୍ରୌଢ଼ା ନାରୀ
ଥକା ହୋଇ ତହୁଁ ଛୁଆଟା ହୋଇଗଲା କଅଣ ଭାଳି ।
ବୁଲାଇ ସେନେହ-ସଜଳ ଆଖି
ସନାତନ ଦେହେ ଅମିୟ ପରଶ ଦେଲା କି ମାଖି ?

ସ୍ୱପ୍ନ-କାଙ୍ଗାଳ ବାଳକର ତୃଷ୍ଣା ବୃଦ୍ଧିଲା ତାହା
ସତେ କି କୁଅଟେ ଦୂର ହୋଇଗଲା ପ୍ରାଣର ଦାହା !
ତରୁ-ଗୁଳ୍ମ-ହୀନ ମରୁର ପଥେ
ସ୍ଫଟିକ ଜଳର ଝରଣା ଗୋଟିଏ ଦେଖିଲା ସତେ !
ବହୁତ ଭରସା କରି ସେ କହିଲା ବିନୟ-ବାଣୀ,
"ପିଇବାକୁ ମତେ ଦେବ କି ମାଉସି, ଟୋପାଏ ପାଣି ?
ଦେବ ଯଦି ଦଅ, ବେଗି ଦଅ,
ଛନ ଧନ ହେଲା ତୋ'ରାଣି ଦେଖିନ, ଜଳୁଛି ଦହ ।"
ତର ତର ହୋଇ ଘରେ ଯାଇ ତହୁଁ କରୁଣାମୟୀ
କଂସାଏ ଭାତ ଅଣି ପ୍ରେଇଲ ଗେ ଥୋଇଲା ତହୁଁ,
"ପିଇ ଦେ, ଅରେ, ଲାଗିବ ଭଲ,
ହାଲିଅ ଦେହରେ ଆସିବ ହେଲେ ହେ ଟିକିଏ ବଳ ।"

ସନାତନ ତହୁଁ ପିଇଲା ଉପର ତୋରାଣିତକ
ମାଇଲା ଧକ୍କ ।
ଯେଉଁ ଭାତତକ ରହିଥିଲା ତହୁଁ ନ ଖାଇ କଲେ
କରୁଣାମୟୀକି ଗୁହାଁଲା...... ବିକଳେ ଅତି ବିକଳେ ।

"ଛନ ଧନ ହେଲା ଅରେ ବାପ କିଛୁ ଖାଇନୁ ପର
ଖାଇ ଦେଉ ନାହୁଁ, ମନରେ କଅଣ ଭାବୁଚୁ ଭଲା
ମନରେ କଅଣ ଭାବୁଚୁ ଅଉ ?
ଲଜ୍ଜାଉଚୁ କାହିଁ ଖୋଲ୍ କରି କହୁ ତୋ ଗାଳିଅ ଯାଉ ।"

"ନାହିଁ ଗୋ ମାଉସି, କଅଁ ଦେଇଥିବ ତୋ' ଆଗରେ ?
ଆସିଲା ବେଳେ ତ ଖାଇବାକୁ କିଛି ନ ଥିଲା ଘରେ ।
ଜାଇ ଭୋକ ଥିଲା ବୋଉ ମୋର କିଛି ନ ଥିବ ଖାଇ
ଅଉଠି ପାଉଟି ଦେଇଥିବ ଖାଲି ମୋ ପାଇଁ ହିଁ,
କହିଲ କମିତ ଦେବ ମୁ ଗେଲ ?
ଘରେ ନେଇ ଗଲେ ଖାଇବୁ ଏତିକ ସବଏ ମିଳ ।"

ଆକାଶ ପାତାଳ ଭାଳିଲା ସେ ତହୁଁ ମରମଗତେ
କଅଣ ସତେ !

"ପିଲା ବଳଟେ ତୁ କେତେ ବଡ଼ ଗୁଣ ଅଛୁ ରେ ଧନ !
ମୋହର ଥିଲା ଯେ ରତ୍ନୁଣୀ ଆଳ
ଗୁଣର ସେ ଥିଲା ତୋହର ପର ।"

କହୁଁ କହୁଁ ତାର କଂପି ଉଠିଲା ମୁଖ'ର କଥା
ଲହ ଭମି ଉଠି ଛଳ ଛଳ ହେଲା ଆଖିର ପତା ।
"ଆଉ କଅଁ ତେବେ କହୁଚୁ ମଠ ?
ବୋଉ ହାଇ ତୋର ଗୁହିଁ ରହିଁଥିବେ ଯା' ତୁ ଝଟ ।"
ଭାତ ପୁଟୁଳାଟି ବାନ୍ଧିଲା ଅତ ଯତନ କରି
ମନରେ ଅତୁଳ ଆବେଗ ଧରି,
ଯାଉଣ କହି ସେ ଚଞ୍ଚଳ ହୋଇ ହେଲା ବାହାର
ଘର ମୁହାଁ ବାଟ···ଭାରି ଉଚାଟ ମନ ତାହାର !

ଉପାସିଆ ଦେହ- ମୁଣ୍ଡ ତ ଝାଉଁ ମାଉ ନେଉଛି
ପାଦ ଟଳ ଟଳ ତଥାପି ସଙ୍କୋଚରେ ପଥ ବାହୁଛି ।
ଉପରୁ ମାରୁଛି ନିଦାଘ ରବି,
ଦହେ ଦହେ ତାର ଗଲା ଯାଉଅଛି ଅନଳ ପରି !
କିଛି ବାଟ ଗଲା···ନାମ-ଜଣା-ନାହିଁ ନଈର କୂଳେ
ବସିଲା, ଜଟେ ପୁରୁଣା ସେ ବରଗଛର ମୂଳେ ।
ଟୁପ୍ ଟୁପ୍ ଟୁପ୍ ପଡ଼ିଲା କେତୋଟି ନାଳିଆ ଫଳ
ପେଟ ବିକଳରେ ଉଠିଲା ଜଳ ।
ହେଉ ତ ମରଣ ଓଳଟି ବସିଲା, ହେଲା ନି ସହୁ
ଫିଟାଇଲା ତାର ସ୍ୱତ ପୁଟୁଳାଟି ଆବେଗ ବହୁ ।
ପୁଣି ସେ କି ଭାବି ପୁରୁବ ପରି
ବାନ୍ଧିଲା ସେଇ ଭାତ ପୁଟୁଳାଟି ଯତନ କରି ।

ଏହିରି ବହୁତ ରାସ୍ତା ରହିଛି·········ଅଢେଇ କୋଶ
କେମିତି ଭଲା ସେ ମାଡ଼ିବ ଭୋକ ରେ ମାରିବ ଶୋଷ ?
ନଈ-ଧାରେ ଯାଇ ଅଞ୍ଜୁଳେ ପିଇଲା ଟିକିଏ ପାଣି
ଛୁଇକି ନେଉଟି ଅସିଲା ଉଠିତ କଷ୍ଟ ମାନି ।
ଭାତ ପୁଟୁଳାଟି ଜଡ଼ାଇ ବୁକେ,
ଭୂଇଁ-ଶେଯତଳେ ଶୋଇ ପଡ଼ିଲା ସେ ବିରସ ମୁଖେ ।

କଅଁଳ ପବନେ ଶୁଣୁଁ ଶୁଣୁଁ ଅନ୍ଧା ନୟନେ ତାର
କାହୁଁ କାହୁଁ ନିଦ ଭରିଗଲା ସବୁ ଅନ୍ଧକାର ।
ବେଲ ଖସିଗଲା—ଖସି ମଉଳିଲା—ଆଉ ତ କାହିଁ
ସନାତନ ତହୁଁ ଉଠିଲା ନାହିଁ ।
ବିହଙ୍ଗ ଦେଇ ଗୁଞ୍ଜଲଟିମାନ ଘାତଟିମାନ
କାଅ କାଅ ରବ କୁଅ ଉଠାଇଲେ ଶୋକର ତାନ ।

ଯାଉଁ ଯାଉଁ କେହୁ କହିଲା ସେଅନ୍ତେ ଲକ୍ଷ୍ୟ କରି
"କାଏ ସେ ଗୋଟିଏ ଯାଇଛି ମରି ।"
ଆକାଶ ବତାସ କାନେ କାନେ ତାର ଉଠିଲା କହୁ—
"ମରି ନାହିଁ ସେ ତ ମରଣ-ଜୟୀ ।

# ପାଇକ ବିଦ୍ରୋହ

ଜ୍ଞାନୀନ୍ଦ୍ର ବର୍ମା

ସେକାଳେ ନ ଥିଲେ ଏ ଦେଶର ଲୋକ
  ଅଜର ପରିଏ ଏଢ଼କ ସ୍ଥାନ,
ଫିରିଂ ଶାସନ ଅସହ୍ୟ ହେବାରୁ
  ବିଚଳିତ ହେଲେ ଦିନକୁ ଦିନ ।

ସହିଁ ସହିଁ ଶେଷେ ଅଉ ନ ପାରିଲ
  ଅଧିକ ଦୂରକୁ ଜୀବନ ସହିଁ,
ଜାଗିଲ ଦ୍ୱନ୍ଦ୍ୱ, ଜାଗିଲ ଅନ୍ଧ
  ଶିର ରଣ-ପ୍ରାଣ ଓଗାଳିଲ ସାହି ।

ହାତର ବର୍ଚ୍ଛା କ୍ଷିପ୍ର ହୋଇଲା'
  ଉର୍ଦ୍ଧ୍ୱଗ ହେଲା ଆଖିର ଗତି,
କର୍କଶ ହାତେ କାର୍ମୁକ କଷି
  ଜ୍ୱାଳିଲା ପାଇକ ଜଳାଅ ବତୀ ।

ଭିତର ପଟରୁ ଲୁଣ ହକିଲାଣି,
ଜାମ୍ବୁ ଢାଗେଣ୍ଟରେ ବସିଲା ଖୁର,
ଠିକ ଠିକ ହୋଇ ମରବ କାହିଁ ରେ
ଅତେ ବଦାହବା ମରମ-ପୁର।

ଗଜପତି ରାଜା ଫକୀର ହୋଇଲା,
ହାକିମ୍ ବାହର ଭଣ୍ଡାର ହେଲା,
ଜଗନ୍ନାଥର ସଶୋଧି ମଲାଣି,
ସକଳ ଦଗରୁ ବୁଡ଼ିଲା ଭେଳା। ......

ପାଇକ କହିଲା, ଘାଇକ ଗୁହିଁଲା,
ପାଇକ-ବାଳକା ଖସିଲା ତୀର,
ଦୁମୁସର କାହିଁ ଶୁଭିଲା କାହାଲୀ
ଶଙ୍ଖ ଘଣ୍ଟ ଗୁହିଁ ଜନନୀ କ୍ଷୀର

ଖୋରଧାର ବଣ, ଖୋରଧାର ଗାଆଁ
ଧୀରେ ଧୀରେ ହେଲା କଙ୍କାଳତ,
ଗ୍ରାମେ ଗ୍ରାମେ ଉଠେ ଶିଂଗା ଶବଦ
ପ୍ରାଣ କର ଅଛି ଉଛୁସିତ।

ସମର...... ସମର ବିପୁଳ ସମର......
ସମର ନୁହେଁ ଏ ଗଡ ଦଜର,
ଅଶନ, ବସନ, ଜୀବନର ଲାଗି
ଏ ସମର-ଯାତ୍ରା ମହାଜନର।

ଦେଶ-କଷ୍ଟ ଲାଗି ଜାଗି ନ ପାଇବ,
ଜାଗେ ନ ସଇନ କାହିଁ ଅବେଶ,
ରକତ-ଶୋଷକ ଫିରିଂ ଅସିଛି
ଛଳ ଛଳ କରି ଜୀବନ ଗ୍ରାସେ ।

ଗ୍ରାସଇ ଅଜ ରେ ଫିରିଂ ଶାସକ,
ଖଣ୍ଡା କାଢଇ ଶସ୍ତ୍ରାୟୁଧ,
ଦଲବେହେରାର ରୁଦ୍ର କୁହାଟେ
ଯଣେ ଉଡ଼ିଯାଏ ପକ୍ଷୀ-ପଥ ।

ସେଉଂ ରହିଲା ଯାହାଂ ଗରବେ
ନୂଆ ଯୁଗନୀତ, ପୁରୁଣା ବୀର,
ଓଡ଼ିଶା ଦେଶର ପାଠ ସେନାପତି
ଜଗବନ୍ଧୁର ନଭିଛି ଗୀର ।

ସାହେବ-ଦୁଆନ କୃଷ୍ଣଚନ୍ଦ୍ର
ବକ୍ସିର ଆଗେ ହସଇ କାବା,
ଓଡ଼ିଶା ଦେଶର ସେନାପତି ପୁଣି
ଜନତାର ଦାନେ ଯାପଇ ଦିବା ।

ଜମିଦାରୀ ସବୁ ଜାଗିରି ଯାଇଛି,
ରାଜା ବି ହୋଇଛି ରାଜ୍ୟହରା,
“ମକଦମା କର ଅଦେଶ ଅସିଛି,
ଦାସ କର ହୋଇ ସର୍ବହରା ।”

ଫିରି…ଫିରି…କେଉଁ ଦେଶର ଏ,
ସେ ଦେଶେ ନାହିଁକି ମହତ-ମାନ,
ବାହୁରେ ସ୍ଫୋଟକ ମାର ହେଲ ବୀର,
ଏ କାଳେ ଶୁଭିଲା କାହାଳୀ-ତାନ ।

ଅସ୍ତାବଳରେ ଅଶ୍ୱ ଡାକିଲା,
କୁଙ୍କୁମ କିଏ ବୋଳିଲା ସ୍ଥଳେ…
ତନ୍ଦ୍ରା ତୁଟାଇ ବକ୍ସି ଦେଖଇ
ଅଛ ନାହିଁ ବେଳ ସଇନ ଗୁଳେ ।

ସ୍ୱହାଂ ନୁହଇ ବେଡ଼ଂ ନୁହଇ…
ଆଜି ଆସିଅଛି ଦେଶର ଡାକ,
ପାଇକ ଏ ନୁହେ ବକ୍ସି ଏ ନୁହେ,
ଆଜି ଜାଗିଅଛି ଦେଶଟା ଯାକ ।

ଦୂରେ ମିଶିଗଲା ଅଶ୍ୱର ହ୍ରେଷା
ପବନେ ଭାସିଲ କଦମ୍ବକ
ବହୁଦିନ ପରେ ଅସ୍ତ୍ର ଡାକନ୍ତି
ଜାଗିଛି ଅସତ ଉଚ୍ଛେଦକ ।

ଚପିରେ ଲୁଟିଲା ବକ୍ସିର ତନୁ
ଦ୍ୱାରେ ଦ୍ୱାରେ ବୀର-ଲଳନା ଆଖି
ଓଡ଼ିଶାର ଶେଷ ସେନାପତି ଛବି
କେବଳ ରଖିଲା ନିଖୁଣେ ଆଙ୍କି ।

ଶତେ ବରଷରୁ ଊର୍ଦ୍ଧ୍ୱ ହୋଇଲାଣି,
ବହୁତ ଦିବସ ତଳର କଥା,
ଇତିହାସ ଖୋଲି ଜାଣି ହେବ ସବୁ
ଦେଶ ଲାଗି ଦେଲେ କେତେକ ମଥା ।

ଫିରିଂ ଶାସନ ଟଳମଳ ହେଲା
କମ୍ପି କଟକ—ଓଡ଼ିଶା ସାରୀ
ଜଳିଲା ଖୋରଧା, ବାଣପୁର, ଗୋପ,
ମାତିଲା କୁଜଂ, କନିକା, ପାରୀ,

ଅସୁରେଶ୍ୱର, ଚରଣ ଜଳିଲା
ହରିହରପୁର ସହିତେ ପୁରୀ;
ତଥାପି ନ ଛଳ ରହିଗଲା ସେହି
ବିଦେଶୀ-ଶାସନ-ଯନ୍ତ୍ରପୁରୀ ।

ଶହୀଦ୍ ବକ୍ସି, ଶହୀଦ୍ ସେନାଣୀ,
ବନାଣୀରେ ନେଲେ ଆପଣା ପଥ,
ବୀର ବାଳା-ବଧୂ ଅନାଇ ରହିଲେ
ନେଉଟିଲା ନାହିଁ ରୁକୁଣା ରଥ !

ଗୋଟି ଗୋଟି ହୋଇ ମସ୍ତକ ଦେଲେ
ସହି ନେଲେ ନାହିଁ ଶାସନ ହୀନ,
ମରି ମରି ସେହୁ କରି ଗଲେ ଶେଷେ
ଅମ୍ଭ ଇତିହାସେ ମୂଲ୍ୟ ଦାନ ।

ଭାରତ ଯେ କାଳେ ନିଦ୍ରିତ ଥିଲା
ବିଦ୍ରୋହ ନବ ନ ଥିଲା ଜାଣି,
ଅମର ଦେଶର ବୀର-ଅନ୍ତରେ
ଉଠିଥିଲା ତାର ପ୍ରଣବ-ବାଣୀ ।

ଶହୀଦ୍ ପାଇକ, ଶହୀଦ୍ ସେନାନୀ,
ଶହୀଦ୍ ବକ୍ସି ବିଦ୍ୟାଧର,
ମରି ନାହିଁ ତମେ କେବଳ ଗଢ଼ିଛ
ଆମ ଇତିହାସ ଗନ୍ତାଘର ।

# ସାଧବ ଝିଅର ଗୋଟିଏ କଥା

ବିନୋଦ ଚନ୍ଦ୍ର ନାୟକ

୧

ଶୁଣ ଲୋ ଝିଅ ମୋ !
କହିବି ମୁଁ ତତେ ଗୋଟିଏ କଥା,
ସାଧବ ଘରର ସାତ ବୋହୂ, ଖାଲି
ଗୋଟିଏ ଝିଅ , ନାଁ କନକଲତା ।

ସାଧବ ବୁଢାର ଗେଲବସର ସେ,
ନାତୁଣୀରେ ତାର ଶରଧା ଭାରି ।
ବଣିଜରେ ଗଲେ ସାଧବ, ନିଏ ତା'
ସାଥିରେ ତାହାକୁ ଦରିଆ ପାରି ।

ଶୁଣ ଲୋ ଝିଅ ମୋ ! ଶୋଇ ପଡୁଛୁ କି !
ଶୋଇଲେ କହିବି ନାହିଁ ମୁଁ କଥା,
ବୋଇତରେ ବସି ଦରିଆର ପାରି
ଦିନେ ଗଲା ଚାଲି କନକଲତା ।

୨

ଯାଯାଜୀ ସାଗର ଉପକୂଳୁଁ ଦୂରେ
ଦୋହଁାଇ ବୋଇତ ସ୍ପନ୍ଦନ ହରେ,
ଦୂର ଦ୍ୱୀପ କ୍ଷେତ୍ରୁ ଲବଙ୍ଗ ଫୁଲ—
ଗନ୍ଧ ପବନ ଅଣଇ ପାଶେ ।

ନୀଳ ଲହରୀର ଫେନପୁଞ୍ଜରେ
ବୁଡ଼ଗଲା ଧୀରେ ରବିର ଦର୍ପ,
ସନ୍ଧ୍ୟା ଆସିଲା ନୀଳମେଘୀ ପାଟେ
ଘୋଡାଇ ଅକାଶ ଯତନ କରି ।

ସପ୍ତମୀ ତିଥି ଚନ୍ଦ୍ର ଉଇଁଲା
ମେଘର ଉଠାଲେ ଲୁଗୁଣ ମଥା,
ଅଗା କହୁଥିଲା ସାକ୍ଷୀଗୋପାଳ—
ଗପ; ଶୁଣୁଥିଲା କନକଲତା ।

୩

ବୋଇତର ବୁଢା ଖଲାସି ଆସିଣ
ସଲାମ ଜଣାଏ ସାଧବ ଆଗେ—
"ହୋୟାଂହୋ ନଦୀ ମୁହାଣ ଅଗର
ବନ୍ଦରେ ଆସି ବୋଇତ ଲାଗେ,

ଚନ୍ଦ୍ରରେ ଦିଶେ ଅଲୋକ-ପରଶ୍ମି,
ଝଡ ଆସିପାରେ ରାତ୍ରି ବେଳେ,
ନଙ୍ଗର ଦେବ ନଦୀର ମୁହାଣେ
ସକାଳର ଯାଏ ହୁକୁମ ହେଲେ ।"

ବୁଢା ମାଝି ପିଏ, ବଙ୍କଘାଟରେ
ଭେଟେଡ ଝଡ ଭାର ଛୁଇଁଣ୍ଡି ମଥା,
ସାକ୍ଷୀଗୋପାଳ ଅଶ୍ରୁଣା ରହିଲା,
ଚକିତେ ଗୃହିଁଲା କନକଲତା ।

୪

ପିକା ଟାଣି, ପାଟି କଣେ କୁଣ୍ଡଳୀ—
ଧୂଆଁ ଛାଡ଼ି, ହସେ ସାଧବ ଧୀରେ,
"ଅକ୍କଲ ନାହିଁ ବୁଢା ଖଲାସିର
ବୁଢା ବେଳେ ଡର ଛାଡ଼ି ନ କରେ !"
ଗ୍ଭଲଇ ବୋଇତ, ଧଗଦେଖା ଭେଦ
ନୀଳ ଜଳରାଶି କରୁଡ଼ି ହୁଏ,
ସାଗର ସ୍ନାନ କି ସମ୍ରଣିଭାବି
କରି ନିଏ ! ନବେ ଲହରୀ ଛୁଏଁ ।
ଚନ୍ଦ୍ର ନିଭିଲ ସ୍ତୂପ ମେଘମେଳେ ......
ଅଳ୍ପଅର ଅଡ଼ ନ ମିଳେ ପତା,
ସାଧବର କୋଳେ ଅଜାଣ ବସିଲା
ଘୁଞ୍ଚି ଅଳପ କନକଲତା ।

୫

ପ୍ରଳୟ ଶଙ୍ଖ ବାଜିଲା ଅକାଶେ
ମେଘେ ଚମକଇ ବିଜୁଳି ରେଖା,
ଊର୍ମି ଉପରେ ଊର୍ମି ଉଠଇ
ତଟଭୂମି ନାହିଁ ଯାଏ ତ ଦେଖା ।

ସହସ୍ର ଫଣା ଟେକି ଫୁଫୁକାରେ
କାଳ-ନାଗୁଣୀ କି ଆସଇ ଧାଇଁ
ଲୁହଅଜୁ ଯେବ ସାଧବ ବୁଢାର
ବଣିଜ ତରୀକି ଗ୍ରାସିବା ପାଇଁ !

ଦୃଷ୍ଟି ଆସିଲା ଘୋଟେ ଅନ୍ଧାର
ସୃଷ୍ଟି ଶେଷର ରାତି ଯଥା
ସାଧବର କୋଳେ ଅଜ୍ଞ ବସିଣ
ଅନାଇ ରହନ୍ତି କନକଲତା !

୨

ଗର୍ଜ୍ଜେ ସାଗର ଭୀଷଣ ବେଶରେ
ଉଡ଼ାଇ ଟୁବାଇ ବୋଇତ ହୁଏ,
ପାହାଡର ସମ ଲହଡ଼ା ଲହଁସି
ଉଠେ ଆକାଶ-ମେଘକୁ ଛୁଇଁ ।

କେରୁଆଳ ଛାଡ଼ି ପାଲ ଖୋଲି ଦେଇ
ନଙ୍ଗର ମାଝି ପକାଏ ପାଖେ
"ଜୟ ଚକାଡୋଳା ପତିତ ପାବନ"
ଶିରେ ହାତ ଯୋଡ଼ି ସାଧବ ଡାକେ ।

ଶେଷେ ହାତ ଟେକି "ଜୟ ଚକାଡୋଳା"
କହି ନୁଆଁଇଲା ଜଳକୁ ମଥା
ବିଦେଶୀ ସାଗରେ ତୋପାନର ତୁଲେ
ସେଦିନ ପ୍ରଥମେ କନକଲତା ।

୭

କନକ ପଚ୍ଛରେ "ଗୁଡ୍ଡୁମ୍ ଗୁଡ୍ଡୁମ୍
ଶୁଭେ କସ ଅଜା କୂରେ ସିଅଡେ ?"
"ଅମପର ଢେଉଁ ବୋଇତ ବଧପଦେ
ସାହ୍ରାଜ୍ୟ ଲୋଡ଼ି କମାଣ ଛୁଟେ।

"ନଙ୍ଗର ନାହିଁ ମାନଇ ବୋଇତ
କାହିଁ ବୁଢ଼ା ମାଝି ଖଲାସି କାହିଁ ?"
ସାଧବ କହିଲ, "କନକ ! ଏଇଠି
ବସିଥା, କୁଅଡେ ଯିବୁ ତୁ ନାହିଁ।

"ବୋଇତ ସଙ୍ଗ ସଲଖାଇ ଦେଇ
ଫେରେ ଆସୁଛି ମୁଁ।" ହଲଇ ମଥା
ହଁ ଭଳ ଏକା ସୂନା ଟିଅ ପରି
ନ ଡରି ବସିଲା କନକଲତା।

୮

ସହସା ବୋଇତ ପିଠି ହୋଇଗଲା
ସାଗରର ଲମ୍ବ ପାହାଡ ପରେ,
ଭାଙ୍ଗିଲା ସଙ୍ଗ ... ଗଦ ଗଦ ହୋଇ
ଗୁରିଅଡୁ ପାଣି ବୋଇତେ ପଡେ।

"ବୋଇତ ବୁଡୁଛି... ଚଞ୍ଚଳ ଆସ।"
ଖଲାସି କେ କହେ ଅପେଣ ଧାଇଁ,
"ନଉକା ଛାଡୁଛି।" କନକ କହିଲା,
"ଆଜ ଛାଡ଼ିବାକୁ ହୁକୁମ ନାହିଁ।"

ପଳାଏ ଖଲାସି ଜୀବନ ବଇଲେ
ବେଳ ନାହିଁ ଆଉ ଶୁଣିବ କଥା,
ଆଖାର ଫେରିବା ପାଇଁ ଥିର ମନେ
ବସି ରହେ ଏକା କନକଲତା ।

୯

ଉଠେ ଗରଜି ଅଥିଣ ଲହଡ଼ା
କନକଲତାର ପଦରେ ଛୁଇଁ
ବୁଡୁଛି ବୋଇତ ତଥାପି କନକ
ଟିକିଏ ହେଲେ ବି ଅଧୀର ନୁହିଁ ।

ଅସିବ ତ ଅଙ୍କା କାହିଁ ଅଙ୍କା ଅଉ—
ମଙ୍ଗ ସାଥିରେ ଗଲାଣି ଭସି !
ଗର୍ଜେ ସାଗର ଭୈରବ ବେଶେ,...
କିଏ ଦେବ ଏଇ ଖବର ଅସି !

ବଜ୍ର ବାଜଲା ହଠାତ୍ ଅକାଶେ
ଉଠିଲା ଊର୍ମି ପ୍ରଳୟ ଯଥା;
ବୁଡ଼ିଲା ବୋଇତ ଅତଳ ଜଳରେ
ବୁଡ଼ିଗଲା ଅହା କନକଲତା !

୧୦

ଯାପାନୀ ସାଗର ଉତ୍ତର ଦିଗେ
ତୁଷାରିତ ମେରୁ ସାଗର କୂଳେ
ମତ୍ସ୍ୟ-ଶିକାରୀ ନାଉରି ଦେଖିଲା
ଅପସରୀ କିଏ ଶୋଇଛି ଭୂଲେ ।

ନିକଟେ ଦେଖିଲା ସ୍ନେହ କିଁ ଅଟିଏ
    ମଲା ପରି ନାହିଁ ଯାଏ ତ ଜଣା,
ଅଖିକୋଣେ ଜମି ତୁଷାର ହୋଇଛି
    ଦୁଇଟି ଲଳିତ-ଲୋତକ କଣା ।
ତୁଷାରରେ ସାଜ ଦେଲା ତା ସମାଧି
    ଚୀନା ନାଉରୀ ସେ । ସଇଲା କଥା
ଶୁଣିଲି ତ କିଅ, କଥା ରହିଗଲା
    ଶୁଖିଗଲା ସିନା ବନକଲତା ।

---

# ବାଜି ରାଉତର ମାଆ

ଅନନ୍ତ ପଟ୍ଟନାୟକ

ମଉଳିଲା ସଭା, ଫେରିଲେଣି ସବୁ ଲୋକେ;
କାହୁଁ ଅବା କିଏ ଗଲ୍ପ ରଚିଲେ ଥୋକେ ।
ପଉଷ ହିମାଳ କଳିଙ୍ଗା ଥରାଇ ବହେ,
ଢେଙ୍କାନାଳର ହୃଦ କି ଅଗ୍ନି ଦହେ ! !

ଶୁଣି ପାଣ୍ଡୁଲେ ବାଳକ ସମର ଭେଟି,
ସୈନିକ ଗୃହେଁ ପଶ୍ଚାତେ ଟିକେ ଫେର ।

ଛିନ୍ନ ବସନ ମଳିନ ଆନନ ତୋଳି
ଅସୀମ କାଳର ଅକୂଳ ଅକୁଣ୍ଠ ଗୋଳ
ଅତି ସକରୁଣ ସ୍ୱରେ—
ଜନନୀ କହିଲା ଥରାଇ ନୟନ ଜଳେ ।

"ତମେ ତ ଭୁଲିବ ବାକ୍ୟ ଟଳା ଯେ ବାଟେ,
ଭିଡ଼ିବ ତରୀଟି ଭିଡ଼ିଲା ସେ ଯେଉଁ ଘାଟେ ।
ଶୁଣିବ ନା କଥା ପାଗଳ ହୋଇଚ ପରା,
କାହିଁକି ମରୁଚ କାହିଁକି ସେ ଅବା ମଲା ?

କୋଳ ପୁଅ ମୋର କୋଳରେ ଥା'ନ୍ତା ଶୋଇ
ତମ ଲାଗି ସିନା ବସିଲି ତାହାକୁ ଖୋଇ ।
ସଭିଙ୍କ ଯାକର ପରଜା ହୋଇବେ ସୁଖୀ,
ସେଥିଲାଗି ସିନା ହେଲି ମୁଁ ଲୋତକ-ମୁଖୀ ।

ସେଥିଲାଗି ସିନା ପଡ଼ିଲା ଢୋକାଢା ଢଳି,
ଅକାଳେ ଲୋଟିଲା ଦରଫୁଟା ଫୁଲ-କଳି ।
—ଦୁଖ ନାହିଁ ମୋର ଦୁଖ ଖାଲି ଲାଗେ ମନେ,
ସତେ କି କେବେ ରେ ସୁଖୀ ହେବେ ଦେଶଜନେ ?

ଚମକିଲା ଅଖି    ରକ୍ତ ଛୁଟିଲା ଥରେ,
ବାଷ୍ପ-ଆକୁଳ କଣ୍ଠ ଧରିଲା ଜଡ଼;
ପାରିଲା ନି କିଛି କହି,
ବୁଝିଲି କିଏ ସେ କଥା କହିବ ପାଶେ ଲଇଁ ।

"ପରଜା ସକାଶେ ଗଲା ସିଏ ଯାଉ ଦୂରେ
ଛାଡ଼ୁ ପଛେ ନାଆ ମରଣ-ସାଗର-କୂଳେ ।
ପରାଣ ଯାଉ ନା ହେବ ଅତୁରତା ନେଇ
ତେସନେ ଅଜ ତ ଦେଶଟା ଯାଏ ଦେଇ ।

ସହିତ କି ଯିଇବ ଦୁଖ ?
ସତେ କି ଫୁଟିବ ଉଆଁସ ଉଠାଇ
ଫୁଟେନେଲ ସୂର୍ଯ୍ୟ-ମୁଖ ! ”

ସାନ୍ତ୍ୱନା ଦେବୁ ସାନ୍ତ୍ୱନା ଦେବୁ କା’ରେ ?
ଯେ ଅଙ୍କ ଓଲଟି ମୃତ୍ୟୁର ଦୀପ ଜାଳେ ।
ଯେ ମାଆ ରଖିଲା ବୁକୁର ରୁଧିର ଢାଳି
ଶିଶୁ ସେନାପତି ଶିରେ ଜୟ-ଟିକା ମାରି
ସାନ୍ତ୍ୱନା ଦେବୁ ତା’ରେ ?
ଅନ୍ତର ଆମ ଭରିଲ ନମିତ୍ତେ
ମୃତ୍ୟୁର ଉପଗୃରେ ।

ନୂଆଇଁ ଅଙ୍କୁଳେ ମଥା
ନୀରବ ରହିଲେ ସୈନିକ ସବୁ
ମୁଖରିଲା ନୀରବତା ।

ସେନାପତି-ପଦେ ବରଣ କଲେ ନ କେହି
ପୁଷ୍ପ-ମାଳିକା ଗଳଦେଶେ ତାର ଦେଇ ।
ଶଙ୍ଖ ଶବଦ ନ ଶୁଭିଲା ତାର ପଥେ
ଜୟଧ୍ୱନି ସେଳ ନ ଉଠିଲା ଅମ୍ବରତେ;
ବାଳୁତ ବୀର ସେ ହସି
ଝଡର ଅବେଗେ ଉଶାନଳେ ଗଲା ପଶି !
ଭଗ୍ନ ପାଇକ ପରସ୍ତେ ଅଣିଲା ବଳ,
ଡାକିଲା ଉଚେ “ଢୋଲ ରେ ନିଶାଣ ଢୋଲ ।

ମରିବାକୁ କିବା ଭୟ ?
ମର ପଦ ତଳେ ଶତ୍ରୁବାହିନୀ
ଲଟିବାକୁ ହେବ ଜୟ ।"
ସେହୁ ଡାକ ଅଗ୍ନି ବାଜିଲା ଶ୍ରବଣ ଦେଶେ
ସଜଳ ନୟନେ ଭାଷିଲା ଜନନୀ ଶେଷେ;
"ଯାଅ ରେ ଷାଇବ ଯାଅ,
ସେନାପତି ତୁମ ସମ୍ମୁଖେ ଏବେ—
କୀରତିଟି ତାର ଗାଅ ।"

ସେନାପତି କାହିଁ ଦୂର ଭାଟଯୋଡ଼ୀ କୂଳେ
ଶୋଇଛି ପୁଲକେ ବାଲୁକା ଧୂଳିର ତୂଳେ ।
ବହୁ ଦୂରେ ଅମ ନୟନେ ଝଲିଲ ଛବି
ତମିର କଟାଇ ଜଳିଲା ଜୀବନ-ରବି ।
ନାଚିଲ ଶୋଣିତ-ଧାର,
ମର ଅମେ ଅଜ ଶମାଇଦେବୁ ରେ
ମଣ୍ତ୍ରିରୁ ମରଣ-ଜାଲା ।

---

# ପୀର୍ ଆଲୀ

କୃଷ୍ଣକାନ୍ତ ଦାସ

ବିଦ୍ରୋହୀ ସିପାହୀ-ନେତା ପୀର୍‌ଅଲ୍ଲୀ ଫିରିଙ୍ଗିର ହାତେ
ବନ୍ଦୀ ହୋଇ ଚଢିଥିଲେ ଫାଶି ଯେଉଁ ଦୁର୍ଦ୍ଦିନ ପ୍ରଭାତେ ।
କହିଲେ ଶ୍ୱେତାଙ୍ଗ-ନେତା ଗର୍ବ ସ୍ୱରେ ବିଦ୍ରୂପ ମିଶାଇ
"ଦୁର୍ଲ୍ଲଭ ମାନବ ଜନ୍ମ ଜୀବନରୁ ବଡ କିଛି ନାହିଁ ।
ଆଗେ ଦେଖ ଫାଶି-କାଠ, ରକ୍ତ ନେତ୍ରେ ଗୃହିଁ ଚ ମରଣ,
ଫିରିଙ୍ଗି ଇସ୍ପାତ ମୁଷ୍ଟିତଳେ ଦେଖ ତୁମର ଜୀବନ ।
ଏବେ ବି ସମୟ ଅଛି—
ନାମ ବୋଲ ଅନ୍ୟ ବିଦ୍ରୋହୀର
ଭୋଗିବ ସମ୍ପଦ ସୁଖ ସ୍କନ୍ଧେ ରଖି ଗର୍ବୋନ୍ନତ ଶିର ।"

ଲୌହ-କଣ୍ଟ ତୀବ୍ର ଗୁଟପ ଝର ଝରଇ ଶୋଣିତ
ନିର୍ଭୀକ ବଦନୁ ଝରେ ଜନ୍ମଭୂମି-ମୁକ୍ତି-ସଙ୍ଗୀତ ।

ଉତ୍ତରିଲେ ପୀର୍ ଅଲ୍ଲୀ, "ରେ ଫିରଙ୍ଗି, ହୋଇ ଯେ ସ୍ୱାଧୀନ
ବୁଝେ ନାହିଁ ଦାସତ୍ୱର ଦୁଃଖ ନିଜେ ସେହି ପରାଧୀନ ।
ଖଡ୍ଗ ବଳେ ଜିଣି ବହୁ ରାଜ୍ୟ ଘୃର ମୃତ୍ତିକା ଉଦ୍ଧାର
ଧରିଛୁ କି ରେ ଫିରଙ୍ଗି ପୀର୍ ଅଲ୍ଲୀ ହୃଦ ଅଧିକାର ?
ଝୁଲଇବୁ, ଝୁଲ ମୋତେ ଫାଶି କାଠେ ନାହିଁ ଡରେ ଭୟ ।
ପାରିବୁ କି ଝୁଲାଇ ତୁ ଜନ୍ମଭୂମି ଆଦର୍ଶ ନିଚୟ ?
ଆଜି ମୃତ୍ୟୁ ମୃତ୍ୟୁ ନୁହେଁ ଜୀବନର ଅନନ୍ତ ଉତ୍ସବ
ମରି ଚିର ବଞ୍ଚିବାର ଏ ସୁଯୋଗ ଜଗତେ ଦୁର୍ଲ୍ଲଭ ।
ମୋର ରକ୍ତ ବିନ୍ଦୁ ବିନ୍ଦୁ ଝରିବ ଯେ ଜନ୍ମଭୂମି ପାଦେ
ଜଳିବେ ମୁକ୍ତିର ଶକ୍ତିଶାଳୀ ଅନଳ ତହିଁ ମହାହ୍ଲାଦେ ।
ବନ୍ଧୁକ ତୋ କର କ୍ଲୀବ ଦର୍ପ ତୋ ଦେବେ ରେ ନିଭାଇ
ଦୁର୍ଜ୍ଜୟ ମୋ ଆତ୍ମା ସ୍ୱର୍ଗେ ସୁଖୀ ହେବ ବନ୍ଧ-ମୁକ୍ତ ରହି ।"

# ବୀରମାତା

କ୍ଷିତୀଶ ଚନ୍ଦ୍ର ଦେ

ନେତାଜି ସମୀପେ         ଖବର ଆସିଲା
    କାନ୍ଦଇ ନାରୀ ଜଣେ
ଗୋଟିଏ ମାତ୍ର         ପୁତ୍ର ତାହାର
    ମରଛି ସେଦିନ ରଣେ ।

ଶୁଣି ଏ ବାରତା,         ଦେଖିଲେ ନେତାଜି
    ଶିବିରୁଁ ବାହାରେ ଆସି
ଦୁଃଖିନୀ ଏକ         ରମଣୀ-ନୟନୁ
    ଅଶ୍ରୁ ଯାଉଛି ଭାସି ।

କୋମଳ କଣ୍ଠେ         ସାନ୍ତ୍ୱନା ସ୍ୱରେ
    ନେତାଜି କହିଲେ, "ମାତ,
ବୀର ପରି ଯେହୁ         ମରଛି, ତା ପାଇଁ
    ନ କର ଅଶ୍ରୁପାତ ।

ଭାଗ୍ୟବାନ ସେ,  ଦେଇଛି ଜୀବନ
ଦେଶର ମୁକ୍ତି ଲାଗି,
ନ କର ଜନନୀ,  ଶୋକ ତାହା ପାଇଁ
ସେ ଯେ ଦେବାଶିଷ-ଭାଗୀ ।

ମୃତ୍ୟୁ-କବଳୁଁ  କାହାରି ତ ଭବେ
ନିସ୍ତାର କେବେ ନାହିଁ,
ସେହୁ ଏକା ଜଣେ  ବରେ ଯେ ମୃତ୍ୟୁ
ଦେଶ-କଲ୍ୟାଣ ପାଇଁ ।

ତା ଛଡା ଜନନୀ,  ମୁଁ ପରି ରହିଛି
ତୁମ ପୁଅ ଏଇ ଅଛ,
ଟାଣି ନିଅ ମତେ,  ଶୂନ୍ୟ ତୁମର
କୋଳ ପୁଣି ଭରିଯାଉ ।"

କହୁଲ ରମଣୀ  ଅଞ୍ଚଳେ ପୋଛି
ଲୋତକ ନୟନୁ ବେନି
"ଜାଣିଛୁ କି ପୁଅ,  କାନ୍ଦୁଥିଲି ମୁଁ
କି ବେଦନା ପ୍ରାଣେ ସେନି ?

ପୁତ୍ର-ମରଣେ  ଦୁଃଖ ନ ଥିଲା
ମରିଛି ସେ ଦେଶ ପାଇଁ,
ଦୁଃଖ ଏତିକି,  ଦେଶ ସେବା ଲାଗି
ଦ୍ୱିତୀୟ ପୁତ୍ର ନାହିଁ ।

କୋହିମା ପ୍ରାନ୍ତେ ଯୁଦ୍ଧ ଲାଗିଛି
ବାହୁନୀ ଗୁଳିଛି ସେଠି,
ଅଉ କେହୁ ନାହିଁ, ଯାହାକୁ ଦେବ ମୁଁ
ଫଉଜେ ତୋହର ଭେଟି ?"

ବିସ୍ମୟ-ମୂକ ରହିଲେ ନେତାଜି,
କହିଲେ ଏତକ ଧୀରେ,
"ଧନ୍ୟ ଜନନୀ, ବୀର-ପ୍ରସବିନୀ
ପଦ ଧୂଳି ଦିଅ ଶିରେ ।"

---

# ଟିପ୍ପଣୀ

## ହରିଜନ

United Press ର Tragic death of sweeper woman, Patna, June 12 ର ଏକ କ୍ଷୁଦ୍ର ସମ୍ବାଦ ଉପରେ 'ହରିଜନ' ଲିଖିତ ।

## ନାପିତୁଣୀର ଗାନ୍ଧୀପୂଜା

ଇଂରେଜୀ ହରିଜନ ପତ୍ରିକାରୁ କଥା ସଂଗୃହୀତ ।

## ମରି ନାହିଁ ସେ ତ ମରଣ-ଜୟୀ

ଶ୍ରୀଯୁକ୍ତ ଦ୍ୱିଜେନ୍ଦ୍ର ଲାଲ ନିୟୋଗୀ ଙ୍କର True tales of Indian Life ନାମକ ପୁସ୍ତକରେ ପ୍ରକାଶିତ 'ସନାତନ' ର କରୁଣ କଥା ଏ କବିତାର ମେରୁଦଣ୍ଡ ।

## ସାଧବ ଝିଅର ଗୋଟିଏ କଥା

ଲେଖକ 'ସାଧବ ଝିଅର ଗୋଟିଏ କଥା "ପୁଷ୍ପ"କୁ ଶୁଣାଇଛନ୍ତି ।

# ବାଜି ରାଉତର ମାଆ

ଏହି କବିତାଟି ବାଜି ରାଉତ ଶିରୋନାମାରେ ସହକାରରେ ପ୍ରକାଶିତ ହୋଇଥିଲା ।

ଢେଙ୍କାନାଳର ପ୍ରଜା ଅନ୍ଦୋଳନ ରେ ବହୁଲୋକ ଗୁଳିରେ ହତାହତ ହୋଇଥାନ୍ତି । ୧୯୩୮ ର ଡିସେମ୍ବର ୨ ତାରିଖରେ ମୋଗଲବନ୍ଦୀରୁ ପ୍ରଥମ ସତ୍ୟାଗ୍ରହ ସେନା ଗଲେ । ଲେଖକ ସେହି ଦଳର ସୈନିକ । ଲେଖକ ଶହୀଦ ବାଜି ରାଉତର ମାତାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ । ବୀରଜନନୀର ବାଣୀ ଏ କବିତାର ଜନନୀ ।

କାଠଯୋଡ଼ୀ କୂଳରେ ଅନ୍ୟାନ୍ୟ ଶହୀଦଙ୍କ ସଙ୍ଗରେ ବାଜି ରାଉତର ଶବ ଦାହ ହୋଇଥିଲା ।

# ପୀର୍ ଅଲୀ

୧୮୫୭ ର ସିପାହୀ ବିଦ୍ରୋହରେ ପୀର୍‌ଅଲୀ ଥିଲେ ଜଣେ ନେତା । ବହୁ ଇଂରେଜଙ୍କ ବଧ କରି ସରକାରଙ୍କ ଦ୍ୱାରା ଧରା ହେଲେ, ତାଙ୍କର ଫାଶି ହୁକୁମ ହେଲା । ଫାସି ଦେବା ସମୟରେ ରାଜ କର୍ମଚାରୀ ଅନ୍ୟ ବିଦ୍ରୋହୀଙ୍କ ନାମ କହି ଦେଲେ ତାଙ୍କୁ ମୁକ୍ତ କରି ଦେବେ ବୋଲି ପ୍ରଲୋଭନ ଦେଖାଇଲେ । ପୀର୍ ଅଲୀ ପ୍ରାଣ ଦେଲେ ମାତ୍ର ଜନ୍ମଭୂମି ପ୍ରତି ବିଶ୍ୱାସଘାତକତା କଲେ ନାହିଁ ।

---